# ଖୋଲି କହି ଦେଲି କଥା ମନର

(କବିତା ସଙ୍କଳନ)

ରଚନା

**ବାଉରି ବନ୍ଧୁ ଲେଙ୍କା**

ପ୍ରକାଶକ

**ଆସ୍ଥା ମିଡିଆ**

ପ୍ରଥମ ପ୍ରକାଶ - ଅଗଷ୍ଟ ୨୦୧୬

ଅକ୍ଷର ସଜ୍ଜା

**ଶିବା ଡ଼ି.ଟି.ପି. ସେଣ୍ଟର**

ଚଣ୍ଡୀଛକ, କଟକ

ମୁଦ୍ରଣ

ଆନନ୍ଦ ପ୍ରିଣ୍ଟର୍ସ, ଚଣ୍ଡୀଛକ, କଟକ



ପ୍ରାପ୍ତିସ୍ଥାନ

**ଦି ପର୍ଲ ରେସିଡେନ୍ସି**

ଦୁର୍ଗାମାଧବ ନଗର, ଭୁବନେଶ୍ୱର

ମୂଲ୍ୟ ୬୦/- ଟଙ୍କା ମାତ୍ର

# ଉତ୍ସର୍ଗ

ଏତେ ବଡ଼ ଏଇ ସଂସାରରେ

ମୋତେ ମଣିଷ ପରି ମଣିଷଟିଏ କରିବାରେ

ସ୍ୱତନ୍ତ୍ର ଅବଦାନ ରହିଥିବା

ମୋର ଦିବଂଗତ ମାତା ଓ ପିତାଙ୍କର

ପବିତ୍ର ସ୍ମୃତିରେ

ଏଇ ପୁସ୍ତକଟି ଉତ୍ସର୍ଗ କଲି

ବାଉରି ବନ୍ଧୁ

# କୃତଜ୍ଞତା

ମୋତେ ସତ୍ୟ-ଧର୍ମ ଓ ନ୍ୟାୟର ପଥରେ ଅବିଚଳିତ ରହିବାରେ ମୋର ଜୀବନ ସଙ୍ଗିନୀ, ପୁତ୍ର-ପୁତ୍ରବଧୂ ଓ କନ୍ୟା-ଜାମାତା ସମସ୍ତଙ୍କର ଅମୂଲ୍ୟ ଏବଂ ଅକୁଣ୍ଠ ସହଯୋଗ ରହି ଆସିଥିବାରୁ ମୁଁ ସେମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରୁଛି କାରଣ ସେମାନଙ୍କର ମାନସିକ ସହଯୋଗ ବିନା ଏ ପୁସ୍ତକ ପ୍ରକାଶିତ ହୋଇପାରିନଥାଆନ୍ତା । ସାମାଜିକ ଜୀବନରେ ନୀତିବାନ ହୋଇ ରହିବା ପାଇଁ ଯେଉଁ ବନ୍ଧୁମାନଙ୍କର ସାହାଯ୍ୟ – ସହଯୋଗ ଏବଂ ସତ୍ ପରାମର୍ଶ ମୋର ପାଥେୟ ହୋଇ ରହି ଆସିଛି ସେମାନଙ୍କ ପ୍ରତି ମଧ୍ୟ ମୋର ଗଭୀର କୃତଜ୍ଞତା ପ୍ରକାଶ କରୁଛି ।

**ବାଉରି ବନ୍ଧୁ**

# ମୁଖବନ୍ଧ

ଜୀବନରେ ମୋର ହାତଗଣତି ଘନିଷ୍ଠ ବନ୍ଧୁ ଅଛନ୍ତି ଓ ସେମାନଙ୍କ ମଧ୍ୟରେ ଲେଙ୍କାବାବୁ ଅନ୍ୟତମ । ଆମର ସମ୍ପର୍କ ପ୍ରାୟ ପଚିଶ ବର୍ଷରୁ ଅଧିକ ପୁରୁଣା । ମୁଁ ଉଗ୍ର ସ୍ୱଭାବର ଓ ଲେଙ୍କାବାବୁ ଶାନ୍ତ ପ୍ରକୃତିର ତଥାପି ଅଗ୍ନି ଓ ବରଫ କେମିତି ଏକାଠି ରହିଛନ୍ତି ତାହା ବିଚିତ୍ର । ପାନଖିଆ ପାଟିରେ ଲାଗି ରହିଥିବା ତାଙ୍କର ମଧୁର ସ୍ମିତହାସ୍ୟ ଯାହା ବେଳେବେଳେ ଅଟ୍ଟହାସ୍ୟ ମଧ୍ୟ ହୋଇଯାଏ ତାହା ତାଙ୍କର ବ୍ୟକ୍ତିତ୍ୱର ଏକ ବିଶେଷ ଆକର୍ଷଣ ।

ହଠାତ୍ ଦିନେ ଲେଙ୍କାବାବୁଙ୍କର ଲୁକ୍କାୟିତ କବି ପ୍ରତିଭା ସମ୍ବନ୍ଧରେ ମୁଁ ଅବଗତ ହେଲି ତାଙ୍କରି ଘରେ କଥାବାର୍ତ୍ତା ଛଳରେ ଏବଂ ତାହା ପରେ ମୁଁ ତାଙ୍କୁ ବାଧ କଲି, କବିତାଗୁଡ଼ିକ ପ୍ରକାଶିତ କରିବା ପାଇଁ ମୁଁ ଆନନ୍ଦିତ ହେଲି ଯେତେବେଳେ ସେ ମୋର ପରାମର୍ଶକୁ ମହତ୍ତ୍ୱ ଦେଲେ ଓ ତାଙ୍କର ରଚନାଗୁଡ଼ିକ ପାଠ କରି ଏହାର ସମ୍ପାଦନାର ଦାୟିତ୍ୱ ସେ ମୋତେ ଦେଲେ ।

ମୋର ମାତ୍ର ଏତିକି କହିବାର ଅଛି ଯେ, ସମସ୍ତ ରଚନାଗୁଡ଼ିକରେ ମୁଁ ମୌଳିକତା ଓ ଭାବନାର ଉନ୍ମୁକ୍ତ ପରିପ୍ରକାଶ ଲକ୍ଷ୍ୟ କରିପାରିଛି । ଲେଙ୍କାବାବୁଙ୍କୁ ତାଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ ପାଇଁ ଅଭିନନ୍ଦନ ଜଣାଇବା ସହ, ମୁଁ ତାଙ୍କର କବି ପ୍ରତିଭାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ତାଙ୍କର ଚଲାପଥ କୁସୁମିତ ହେଉ ।

ଭୁବନେଶ୍ୱର

**ଉଦୟନ ସୂପକାର**

# ମୋ ନିଜ କଥା ...

ଜୀବନର ଆଦ୍ୟ ଅଧ୍ୟାୟ କଟିଗଲା, ସ୍ୱାଭାବିକ ଭାବରେ ପାଠ ପଢ଼ାକୁ ନେଇ – ତା'ପରେ ଚିରାଚରିତ ଉପାୟରେ ଜୀବିକାର ସନ୍ଧାନ, ବୃତ୍ତିଗତ ବ୍ୟସ୍ତତା ବ୍ୟତୀତ ତେଲ ଲୁଣର ସଂସାର ଓ ପାରିବାରିକ ଦାୟିତ୍ୱ ସମ୍ପାଦନରେ ବନ୍ଦୀ ହୋଇ ରହିଥିଲା ମୋର ଏ ଜୀବନ ।

ବୃତ୍ତିଗତ ଜୀବନରୁ ଅବସର ଗ୍ରହଣ କଲାପରେ ଏବଂ ସମସ୍ତ ପାରିବାରିକ ଦାୟିତ୍ୱରୁ ଅବ୍ୟାହତି ପାଇବା ପରେ, ପ୍ରୟାସ କଲି ନିଜ ଭିତରେ ଦୀର୍ଘ ଦିନ ଧରି ନୀରବ ଭାବରେ ବସି ରହିଥିବା ଓ କେବେ କେମିତି କଥା କହୁଥିବା ମଣିଷର ସନ୍ଧାନ କରିବାରେ । ଜୀବନର ଏଇ ସୁଦୀର୍ଘ ଯାତ୍ରାରେ ନାନାଦି ପର୍ଯ୍ୟାୟରେ ଯାହା ଦେଖିଛି, ଶୁଣିଛି ଓ ଅନୁଭୂତି ସଂଗ୍ରହ କରିଛି ସେ ସବୁକୁ ନିଜର ପ୍ରିୟ ଜନଙ୍କୁ ଜଣାଇ ଦେବା ପାଇଁ ମୋ ମନ ଭିତରର ସେ ମଣିଷଟି କହିଲା ଓ ପ୍ରେରଣା ଦେଲା ନିଜ ମନ କଥା ଖୋଲି ଜଣାଇ ଦେବା ପାଇଁ ଏଇ ଦୁନିଆକୁ ।

ଜୀବନରେ କେବେ କାହାରିକୁ ମନା କରିବାର ମୁଁ ଶିଖି ନାହିଁ ତେବେ ମୋର ମନର ମଣିଷକୁ ବା ମନା କରନ୍ତି କିପରି । ଆଉ ଆରମ୍ଭ ହେଲା କାଗଜ ରୂପୀ ଭୂଇଁରେ କଲମ ରୂପୀ ଲଙ୍ଗଳର ଚାଷ ଓ ପରିଣାମ ସ୍ୱରୂପ ଭାବନା ରୂପି ବିହନରୁ ଉତ୍ପନ୍ନ ହେଲା କବିତା ରୂପୀ ଫସଲ ।

ତଥାପି ମନର କୌଣସି କୋଣରେ ସଙ୍କୋଚ ନାମଧାରୀ ଗୋଟିଏ ଭୂତ ଲୁଚି କରି ବସିଥାଏ । ଆଉ ସେଇ ଭୂତକୁ ଦୂର କରିବାର ମନ୍ତ୍ର ଜପିବାରେ ମୋର ଜୀବନ ସଙ୍ଗିନୀ ଓ ପିଲାମାନେ ଅବିଶ୍ରାନ୍ତ ଉଦ୍ୟମ କରିଚାଲିଥାଆନ୍ତି । ଟଣା ଓଟରାର ଏଇ ଖେଳରେ କେତେବେଳେ ସେମାନେ ଜିତି ଯାଉଥାଆନ୍ତି ତ କେତେବେଳେ ମୁଁ ଏପରି ଅନିଶ୍ଚିତତା ଭିତରେ I.C.U.ରେ ପଡ଼ି ରହିଥାଏ ମୋର କବିତା ଗୁଚ୍ଛ ।

ଏଇ ନିକଟ ଅତୀତରେ ଏକ ଧୂମକେତୁ ହଠାତ୍ ଆସି ଉଭା ହେଲେ ମୋ ଘରେ – ଆଉ ସେ ଧୂମକେତୁ ହେଲେ ମୋର ପୁରାତନ ବନ୍ଧୁ ଉଦୟନ ସୂପକାର, ଯିଏ ନିଜେ ଜଣେ କବି, ଗୀତିକାର ଓ ଲେଖକ । ମୋର କବିତା ସମ୍ପର୍କରେ ଜାଣି ସେ ଏହାକୁ ପ୍ରକାଶିତ କରିବା ପାଇଁ ଜିଦ୍ ଧରି ବସିଲେ । ତାଙ୍କ ସ୍ନେହପୂର୍ଣ୍ଣ ଜିଦ୍ ଓ ଆଗ୍ରହ ଆଗରେ ମୋତେ ନଇଁବାକୁ ହେଲା ଓ ତା' ସହିତ ମୋର ପତ୍ନୀ ଓ ପିଲାମାନଙ୍କର ଜିତାପଟ ହେଲା ଶେଷକୁ ।

ମୋ ମନର କଥା ଖୋଲିକରି କହିଛି ସବୁ-ପ୍ରିୟ ସୁଧୀ ପାଠକେ ଯଦି ଏହାକୁ ପସନ୍ଦ କରନ୍ତି ସେଇ ହେବ ମୋର ଉପଯୁକ୍ତ ପାରିଶ୍ରମିକ ।

ବାଉରି ବନ୍ଧୁ

# ସୂଚୀପତ୍ର

***

॥ ୧ ॥

# ଅଳି ଗୁଂଜନେ

ଅଳିର ଗୁଂଜନେ ଶୁଣେ ମୁଁ ତୁମର
ଓଁକାର ନାଦର କଂପନ ।
କଳିର ମୁଦ୍ରିତ ରୂପରେ ଦେଖେ ମୁଁ
ତୁମ ସୌମ୍ୟ ଶାନ୍ତ ବଦନ ॥

ଅଶାନ୍ତ ସାଗର ଢେଉରେ ଶୁଣେ ମୁଁ
ମହା ପ୍ରଳୟର ଗର୍ଜନ ।
ଲେଲିହାନ ଅଗ୍ନି ଶିଖାରେ ଦେଖେ ମୁଁ
ତୁମର ତୃତୀୟ ନୟନ ॥

ଅନନ୍ତ ଆକାଶ ନୀଳିମାରେ ଦେଖେ
ନୀଳକଣ୍ଠ ତୁମର ସୁନ୍ଦର ।
ପାଂଶୁଳ ଏ ଧରା ରଙ୍ଗେ ଦେଖେ ତୁମ
ଭସ୍ମ ଅଙ୍ଗରାଗ ଶରୀର ॥

ହିମାଦ୍ରିର ଶୁଭ୍ର ଶିଖରେ ଶୋଭଇ
ତୁମ କୈଳାଶ କନ୍ଦର ।
ସେ କନ୍ଦରେ ଧ୍ୟାନେ ବସି ଜାଣୁଅଛ
ସାରା ଜଗତର ଖବର ॥

ହେ ସଂସାର-ସାର ଆହେ ମହେଶ୍ୱର
ବିଶ୍ୱ ଆଦ୍ୟ ବିଶ୍ୱ କାରଣ
ଝରୁଥାଉ ତୁମ ଆଶୀଷର ଧାରା
ବିଶ୍ୱ ବନ୍ଦେ ତୁମ ଚରଣ ॥

***

॥ ୨ ॥

# ତୁମେ ସୁନ୍ଦର

ତୁମେ ସୁନ୍ଦର ତୁମ ସୁନ୍ଦର ସୃଷ୍ଟିର
କରି କେ ପାରିବ କଳନା,
ତୁମେ ବିଚିତ୍ର ବିନ୍ଧାଣି ବିଶ୍ୱକର୍ମା ହେ
ନାହିଁ ତ ତୁମର ତୁଳନା ।୦।
ତୁମେ ସକଳ ଶକ୍ତିର ଆଧାର
ତୁମେ ଅପାର କରୁଣା ସାଗର
ତୁମେ ଅନନ୍ତ ଅସୀମ ଆକାଶ
ତୁମେ ଅଖଣ୍ଡ ଜ୍ୟୋତିର ପ୍ରକାଶ
ତୁମ ଚରଣ ରେଣୁର ପରଶ ପାଇଁକି
କିଏ ବା ନ କରେ କାମନା ।
ତୁମେ ସୁନ୍ଦର ତୁମ ସୁନ୍ଦର ସୃଷ୍ଟିର... ॥ ୧ ॥
ତୁମେ ସକଳ ଆଶାର ଆଲୋକ
ତୁମେ ଫୁଲରେ ଭରିଛ ମହକ
ତୁମ ଇଙ୍ଗିତରେ ଚନ୍ଦ୍ର ସୂରୁଜ
ତାରା ଆକାଶେ ସଜାନ୍ତି ମୁରୁଜ
ତୁମ ଅଦେଖା ହାତର କୁଶଳୀ କଳାର
ସବୁରି ମୁଖରେ ବନ୍ଦନା ।
ତୁମେ ସୁନ୍ଦର ତୁମ ସୁନ୍ଦର ସୃଷ୍ଟିର ... ॥ ୨ ॥
ତୁମ ଆଜ୍ଞାରେ ଜଳଇ ଅନଳ
ତୁମ ବଳରେ ବହଇ ଅନିଳ
ତୁମ ଆଦେଶେ ମେଘ ବରଷେ ଜଳ
ଜଳଧି ନ ଲଘେ କେବେ ନିଜ କୂଳ
ଜଗତ ମଙ୍ଗଳ ପାଇଁକି ପ୍ରଭୁ ହେ
ଝରୁଥାଉ ତୁମ କରୁଣା ।
ତୁମେ ସୁନ୍ଦର ତୁମ ସୁନ୍ଦର ସୃଷ୍ଟିର... ॥ ୩ ॥

***

॥ ୩ ॥

# ମୋ ଆଖିରେ ଲୁହ

ମୋ ଆଖିରେ ଲୁହ, ମୋ ମନର କୋହ
ଦେଖି ଯଦି ଭଲ ପାଉ,
ବାକି ଏ ଜୀବନ କାନ୍ଦିବାରେ ଦୁଃଖ
ନାହିଁ ଆହେ ମହାବାହୁ ॥ ୦ ॥

କୁବୁଜାକୁ ରୂପ ଲାବଣ୍ୟ ଦେଇଛୁ
ସୁଦାମାକୁ କୋଟୀନିଧି,
ମୋ ପାଇଁ କରୁଣା ହୋଇଲାକି ଊଣା
କହ ହେ କୃପା ବାରିଧି ।
ଧନ ଜନ ଲୋଡା ନାହିଁ ମୋର ପ୍ରଭୁ
କରୁଣା ମାତର ଥାଉ ।
ମୋ ଆଖିରେ ଲୁହ ମୋ ମନର ... ॥ ୧ ॥

କାହାକୁ ମାରିଛୁ କାହାକୁ ତାରିଛୁ
ଲଗାଇଛୁ କେତେ ଲୀଳା,
କାହାକୁ ହସାଇ କାହାକୁ ଭସାଇ
କି ସୁଖ ପାଉଛୁ ଭଲା ।
କାନ୍ଦିବାରେ ଦୁଃଖ ନାହିଁରେ କାଳିଆ
ତୋ ସହିତ ଭାବ ରହୁ ।
ମୋ ଆଖିରେ ଲୁହ ମୋ ମନର... ॥ ୨ ॥

***

|| ୪ ||

# ମନ ମନ୍ଦିର

ମନକୁ କରିଛି ମନ୍ଦିର ମୋର
ହୃଦୟକୁ ସିଂହାସନ,
ଆସ ବାରେ ପ୍ରଭୁ ମୋ ମନ ମନ୍ଦିରେ
ହେଉ ଏ ଜୀବନ ଧନ୍ୟ || ୦ ||

ଆଖିର ଲୁହରେ ଧୋଇବି ଚରଣ
ଭକତି ନୈବେଦ୍ୟ ଦେଇ,
ପୂଜିବି ପ୍ରଭୁ ହେ ମହା ଆନନ୍ଦରେ
ଶ୍ରଦ୍ଧା ସୁମନେ ସଜାଇ,
ସ୍ୱେଦ ସିକ୍ତ ମୁଖ ପୋଛି ଦେବି ପ୍ରଭୁ
ଲେପିବି ପ୍ରୀତି ଚନ୍ଦନ ।
ମନକୁ କରିଛି ମନ୍ଦିର ମୋର... || ୧ ||

ତୁଣ୍ଡେ ମୋର ଗାଉଥିବି ତୋର ନାମ
ହାତେ ଥିବ ଜପା ମାଳି,
ମୋ ବେନି ଚରଣେ ଭ୍ରମି ଦେଖୁଥିବି
ତୋର ତୀର୍ଥ ବୁଲି ବୁଲି,
କରିଛି ମୁଁ ଆଶା ରଖିଛି ଭରସା
ସେ ସବୁ ତ ତୁମେ ଜାଣ ।
ମନକୁ କରିଛି ମନ୍ଦିର ମୋର... || ୨ ||

❋❋❋

॥ ୫ ॥

# ମହାବାହୁ

ତୁମ ନାମ ଧରି ଏ ଜୀବନ ଯାଉ
ଏତିକି କରୁଣା ହେଉ,
ଏତିକି ମାଗୁଣି ଜୀବ ଗଲା ବେଳେ
ତୋ ନାମ ସ୍ମରଣ ଥାଉ ।
ଆହେ ମହାବାହୁ ଆହେ ମହାବାହୁ ॥
ଗୀତା ଭାଗବତ ପଢ଼ି ନାହିଁ କେବେ
ପଢ଼ିନି ଗୀତ ଗୋବିନ୍ଦ,
ତୁମ ନାମାବଳୀ ମୋ ହୃଦ ସଂଖାଳି
ହେ ମୋର କଳା ଗୋବିନ୍ଦ,
ସେଇ ନାମାବଳୀ ଗାଇ ଗାଇ ମୋର
ହୀନ ଏ ଜୀବନ ଯାଉ ।
ଆହେ ମହାବାହୁ ଆହେ ମହାବାହୁ ॥
ଅଜାମିଳ ପାପୀ ତୁମ ନାମ ଜପି
ତରିଗଲା ମୁଁ ଶୁଣିଛି,
ସେଇ ଭରସାରେ ମୋ ଜୀବନ ତରୀ
ପାରି ହେବ ମୁଁ ଭାବୁଛି,
ମିଛ ଦୁନିଆରେ ତୁମେ ଏକା ସତ
ତୁମ ବିନା କିଏ ଆଉ ?
ଆହେ ମହାବାହୁ ଆହେ ମହାବାହୁ ॥
ତୁମରି ଆଶୀଷେ ସୁନ୍ଦର ଏ ଧରା
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା,
ଏ ନୀଳ ଆକାଶ ସାଗର ତଟିନୀ
କେତେ ସୁଷମାରେ ଭରା,
ଏତିକି ମିନତି ତୁମ ଏ ଆଶୀଷ
ସଦା ସଦା ଝରୁଥାଉ ।
ଆହେ ମହାବାହୁ ଆହେ ମହାବାହୁ ॥



॥ ୬ ॥

# ଖୋଜେ ମୁଁ ତୁମକୁ

ଖୋଜିଛି ତୁମକୁ ପଲ୍ଲୀରୁ ସହର
ନଦୀରୁ ସାଗର ତୀରେ ।
ବଣରୁ ପାହାଡ଼ କ୍ଷେତରୁ ଖଦାନ
ପାଇଲିନି କେଉଁଠାରେ ॥ ୦ ॥

କିଏ କହେ ତୁମେ ରୁହ ମସ୍‌ଜିଦ୍‌ରେ
କିଏ କହେ ମନ୍ଦିରରେ ।
କିଏ କହେ ତୁମେ ରୁହ ଗିର୍ଜାରେ
କିଏ କହେ ଗୁରୁଦ୍ୱାରେ ।
କେଉଁଠି ପାଇବି ତୁମକୁ ପ୍ରଭୁ ହେ
କହି ଦିଅ ମୋତେ ଥରେ ।
ଖୋଜିଛି ତୁମକୁ ପଲ୍ଲୀରୁ ସହର
ନଦୀରୁ ସାଗର ତୀରେ ॥ ୧ ॥

କିଏ ଡାକେ ଆଲ୍ଲା କେ ଡାକେ ଈଶ୍ୱର
କିଏ ଡାକେ ଈଶାମସୀ ।
କିଏ ଡାକେ ସାଇ କିଏ ବାହେଗୁରୁ
କିଏ ଅବା ଆଉ କିଛି ।
ତୁମେ ସର୍ବନାମ କି ନାମେ ଡାକିବି
କହିବକି ମୋତେ ବାରେ ।
ଖୋଜିଛି ତୁମକୁ ପଲ୍ଲୀରୁ ସହର
ନଦୀରୁ ସାଗର ତୀରେ ॥ ୨ ॥

❋❋❋

॥ ୭ ॥

# ହେ ସତ୍ୟ ଶିବ ସୁନ୍ଦର

ହେ ସତ୍ୟ ଶିବ ସୁନ୍ଦର ପ୍ରଭୁ
ହେ ଜଗତ ଈଶ୍ୱର
ଅରପି ଦେଇଛି ଏ ମନ ହୃଦୟ
ଚରଣ ତଳେ ତୁମର ॥

ତୁମ ପୂଜା ପାଇଁ ଯାହା ମୁଁ ଦେଖଇ
ସବୁତ ତୁମରି ଦାନ ।
ତୁମରି ଦାନରେ ତୁମକୁ ପୂଜିଲେ
ହେବ ତୁମ ଅପମାନ ।
ପୂଜା ଅର୍ଘ୍ୟ ରୂପେ ଘେନ ଆହେ ପ୍ରଭୁ
ହୃଦୟ ଭକତି ମୋର ।
ହେ ସତ୍ୟ ଶିବ ସୁନ୍ଦର ପ୍ରଭୁ
ହେ ଜଗତ ଈଶ୍ୱର ॥ ୧ ॥

ଧର୍ମ ଅଧରମ ପାପ ଅବା ପୁଣ୍ୟ
ମୋତେ କିଛି ଜଣା ନାହିଁ ।
ହୃଦୟେ ମୋ ରହି ଯେପରି ବତାଅ
ସେପରି କରଇ ମୁହିଁ ।
ଏ ଭବ ସାଗରୁ ପାରି କର ପ୍ରଭୁ
ଏତିକି ମିନତି ମୋର ।
ହେ ସତ୍ୟ ଶିବ ସୁନ୍ଦର ପ୍ରଭୁ
ହେ ଜଗତ ଈଶ୍ୱର ॥ ୨ ॥

***

॥ ୮ ॥

# ହେ ଶିବାପତି

ହେ ଶିବାପତି ପାର୍ବତୀପତି
ହେ ଶିବ ଶମ୍ଭୁ ଶଙ୍କର,
ଚରଣେ ଶରଣ ଦିଅ ବାରେ ପ୍ରଭୁ
ଏତିକି ମିନତି ମୋର । ୦ ।
ଜଟାରୁ ଝରଇ ଜାହ୍ନବୀର ଧାର
ଗଳାରେ ଭୁଜଙ୍ଗ ମାଳ,
ମସ୍ତକରେ ଅର୍ଦ୍ଧ ଚନ୍ଦ୍ର ଶୋଭା ପାଏ
ଆହେ ପ୍ରଭୁ ମହାକାଳ,
ତୁମ ଅଙ୍ଗ ଶୋଭା କେତେ ମନଲୋଭା
ତୁମେ ତ ସଂସାର ସାର ।
ହେ ଶିବାପତି ପାର୍ବତୀପତି
ହେ ଶିବ ଶମ୍ଭୁ ଶଙ୍କର ॥ ୧ ॥
ଭସ୍ମକୁ କରିଛ ଅଙ୍ଗରାଗ ପ୍ରଭୁ
ବ୍ୟାଘ୍ର ଚର୍ମ ଯେ ବସନ,
ହସ୍ତରେ ପିନାକ ଡ଼ମ୍ବରୁ ତ୍ରିଶୂଳ
ଦିଶେ କେଡେ ଶୋଭାବନ,
ବୃଷଭ ବାହାନେ ବୁଲୁଛ ଶ୍ମଶାନେ
ନାହିଁ ମନରେ ବିକାର ।
ହେ ଶିବାପତି ପାର୍ବତୀପତି
ହେ ଶିବ ଶମ୍ଭୁ ଶଙ୍କର ॥ ୨ ॥
ଅଳ୍ପରେ ସନ୍ତୁଷ୍ଟ ବୋଲି ତବ ନାମ
ହୋଇଅଛି ଆଶୁତୋଷ,
ମୋ ବେଳକୁ କାହିଁ ହେଉଛ ବିମୁଖ
ଆହେ ପାର୍ବତୀଙ୍କ ଈଶ,
ତୁମ ଦୟା ହେଲେ କୋଟୀ ଜନମର
କଳୁଷ ହୋଇବ ଦୂର ।
ହେ ଶିବାପତି ପାର୍ବତୀପତି
ହେ ଶିବ ଶମ୍ଭୁ ଶଙ୍କର ॥ ୩ ॥

***

॥ ୯ ॥

# ଜୀବନ ସଳିତା

ଜୀବନ ସଳିତା ଜଳି ଜଳି ଯାଏ
ଲିଭିବାକୁ ଅଛି ବାକି,
ଲିଭିବା ସମୟ ଆସିଗଲେ ତା'ର
ପାରିବେନି କେହି ରୋକି ।୦।

ଏ ଜୀବନ ପଥ ବହୁ କଣ୍ଟକିତ
କେତେ ଉଠାଣି ଗଡାଣି,
ଯିଏ ସେ ଚାଲିଛି ସେହି ହିଁ ଜାଣିଛି
ପୁରା ଜୀବନ କାହାଣୀ,
ଜୀବନ ଆକାଶେ ମୃତ୍ୟୁର ଛଞ୍ଚାଣ
ଉଡୁଅଛି ଛକି ଛକି ।
ଜୀବନ ସଳିତା ଜଳି ଜଳି ଯାଏ
ଲିଭିବାକୁ ଅଛି ବାକି ।୧।

ସଙ୍ଗୀ ସହୋଦର କେ ନୁହେଁ କାହାର
ସରବେ ସୁଖର ସାଥୀ,
ଗଲାବେଳେ କେହି ଯିବେ ନାହିଁ ସଙ୍ଗେ
ଚାହିଁ ଥିବେ ମଥା ପୋତି,
ନିଜ କର୍ମଫଳ ନିଜେ ହିଁ ଭୋଗିବୁ
ଜୀବନ ପଥେ ଏକାକୀ ।
ଜୀବନ ସଳିତା ଜଳି ଜଳି ଯାଏ
ଲିଭିବାକୁ ଅଛି ବାକି ।୨।

❋❋❋

॥ ୧୦ ॥

# ଜୀବନ ସନ୍ଧ୍ୟା

ଜୀବନ ସନ୍ଧ୍ୟାରେ ସନ୍ଧ୍ୟା ଦୀପ ଜାଳି
ତୁମ ଆରାଧନା ପାଇଁ,
କାହିଁ କେତେ ଦୂରୁ ଆସିଛି ମୁଁ ଧାଇଁ
ମନା ତ କରିବ ନାହିଁ ॥ ୦ ॥

ସଂସାର ବନ୍ଧନେ ବାନ୍ଧିଦେଲ ପ୍ରଭୁ
କର୍ମ ଜଞ୍ଜାଳରେ ରହି,
ସାରା ଜୀବନଟା ଭୁଲିଗଲି ପ୍ରଭୁ
ତୁମକୁ ଡାକିବା ପାଇଁ,
ଯାହା ମୁଁ କରିଛି ତୁମେ କରାଇଛ
ମୋ ହୃଦୟ ମଧ୍ୟେ ଥାଇ।
ଜୀବନ ସଂଧ୍ୟାରେ ସଂଧ୍ୟା ଦୀପ ଜାଳି
ତୁମ ଆରାଧନା ପାଇଁ ॥ ୧ ॥

କଲେ କର କ୍ଷମା ନୋହିଲେ ମଣିମା
ତୁମ ଇଛା ଇଛାମୟ,
ମୁଁ ଛାର ମଣିଷ ତୁମେ ଜଗଦୀଶ
ତୁମେ ଥିଲେ କା'ରେ ଭୟ
ଫେରାଇ ଦେଲେ ମୁଁ ଫେରିଯିବି ପ୍ରଭୁ
ତୁମ ନାମ ଗାଇ ଗାଇ।
ଜୀବନ ସଂଧ୍ୟାରେ ସଂଧ୍ୟା ଦୀପ ଜାଳି
ତୁମ ଆରାଧନା ପାଇଁ ॥ ୨ ॥

***

॥ ୧୧ ॥

# ଝୁରେ ଆଜି

ଝୁରେ ଆଜି ଗୋପ ଦାଣ୍ଡ
ଝୁରେ ଯମୁନା,
ଝୁରେ ରାଧା ବିରହିଣୀ
ନ ମାନେ ମନା ॥ ୦ ॥
ଝୁରନ୍ତି ଗୋପ ଗୋପୀକା
ଗୋପାଳ ବାଳ,
ଝୁରଇ କଦମ୍ବ କୁଞ୍ଜ
ହେନା ତମାଳ,
ବାହୁନି ଯଶୋଦା ଡାକେ
ଫେରିଆ କାହ୍ନା ।
ଝୁରେ ଆଜି ଗୋପ ଦାଣ୍ଡ
ଝୁରେ ଯମୁନା ॥ ୧ ॥
ଗୋପେ ଆଉ ଚୋରି ହେବ
ନାହିଁ ଲବଣି,
ହେଲେ କାହ୍ନା ବିନା ମାଆ
ମନ ବୁଝେନା ।
ଝୁରେ ଆଜି ଗୋପ ଦାଣ୍ଡ
ଝୁରେ ଯମୁନା ॥ ୨ ॥
କାହାକୁ କରିବେ ମାନ
ରାଧିକା ରାଇ,
ବାଜିବନି ବଂଶୀ ରାଧା
ନାମକୁ ବାଇ,
ଆଉ ବାଜିବନି ଗୋପେ
ନିନ୍ଦା ବାଜଣା ।
ଝୁରେ ଆଜି ଗୋପ ଦାଣ୍ଡ
ଝୁରେ ଯମୁନା ॥ ୩ ॥

***

॥ ୧୨ ॥

# କାହିଁକି ମୁଁ ସତ କହିବି

କାହିଁକି ମୁଁ ସତ କହିବି ପ୍ରଭୁ ହେ
ତୁମ ମିଛ ଦୁନିଆରେ,
ମିଛ ଯେ କହୁଛି ସବୁ ସୁଖ ତାର
ରହୁଛି ସେ ଆନନ୍ଦରେ ॥ ୧ ॥
ମିଛ କହିବାର ଅଭ୍ୟାସଟା ଯଦି
ଥାଆନ୍ତା ମୋ ପିଲାଦିନୁ,
କେତେ ଯେ ସୁବିଧା ମିଳିଥାନ୍ତା ମୋତେ
ଭୁଲିଥାନ୍ତି ଦୁଃଖ ମନୁ ॥ ୨ ॥
"ସତ କହିବାକୁ କିଆଁ ଡରିବି" ମୁଁ
ଗାଉଥିଲି ପିଲାଦିନେ,
ସତ କହି ଆଜି ହଟହଟା ହୁଏ
କେହି ନ ଶୁଣନ୍ତି କାନେ ॥ ୩ ॥
"ସତ୍ୟ ନ୍ୟାୟ ପଥେ ଘେନି ଯାଅ ମୋତେ"
କରୁଥିଲି ମୁଁ ପ୍ରାର୍ଥନା,
'ସେ ପ୍ରାର୍ଥନା ଫଳ ମିଳେ ଆଜି ମୋତେ
ଖାଲି କଷ୍ଟ ଓ ଯାତନା ॥ ୪ ॥
ପଦେ ପଦେ ଆଜି ଭ୍ରଷ୍ଟାଚାର ଚାଲେ
ନାହିଁ କାର ନିୟନ୍ତ୍ରଣ,
କା ଆଗେ କହିବି କିଏ ବା ବୁଝିବ
ନାହିଁ ମୋର ପରିତ୍ରାଣ ॥ ୫ ॥
ଅଭ୍ୟାସଟା ମୋର ବଦଳାଇ ଦିଅ
ଆହେ ପ୍ରଭୁ ଜଗଦୀଶ,
ସତ୍ୟ ବଦଳରେ ମିଛ କହିବାକୁ
ମନେ ମୋ ଦିଅ ସାହସ ॥ ୬ ॥

***

॥ ୧୩ ॥

# କାଳିଆ ତୁ କେତେ ସୁନ୍ଦର

କାହିଁ କେତେ ଦୂରୁ ଆସନ୍ତି ଭକତେ
ତୋର ଦରଶନ ପାଇଁ,
ତୋ ରୂପରେ କଣ ଅଛିରେ କାଳିଆ
ମୁଁ ତ ବୁଝି ପାରୁନାହିଁ ॥ ୦ ॥

କାଳିଆ ମୁହଁକୁ ନାଲିଆ ଓଠ ତୋ
ଚାଲୁଣି ପରିକା ଆଖି,
ଗୋଡ଼ ନାହିଁ ପୁଣି ଖଣ୍ଡିଆ ହାତକୁ
ଦେଖନ୍ତି ଭକତେ ଲାଖି,
କି ଯାଦୁ ମନ୍ତର ଜାଣିଛୁ କାଳିଆ
କହିଦେ ରେ ଖୋଲି ତୁହି ।
କାହିଁ କେତେ ଦୂରୁ ଆସନ୍ତି ଭକତେ
ତୋର ଦରଶନ ପାଇଁ ॥ ୧ ॥

ନିତି ସକାଳୁ ତୁ ଗାଧୋଇ ପାଧୋଇ
ପିନ୍ଧୁଛୁ ନୂଆ ବସନ,
ନାକେ ନାକୁଆସୀ ମଥାରେ ତୁଳସୀ
ମାଖୁଛୁ ବାସ ଚନ୍ଦନ,
ମହା ଅୟସରେ ରହିଛୁରେ ତୁହି
ତୋ ପରି ଠାକୁର ନାହିଁ ।
କାହିଁ କେତେ ଦୂରୁ ଆସନ୍ତି ଭକତେ
ତୋର ଦରଶନ ପାଇଁ ॥ ୨ ॥

ଷାଠିଏ ପଉଟି ନିଇତି ଭୁଞ୍ଜୁଛୁ
ଖାଉଛୁ ବିଡିଆ ପାନ,
ଗୀତ ଗୋବିନ୍ଦ ତୁ ଶୁଣୁଛୁ ରାତିରେ
ରତ୍ନ ପଲଙ୍କେ ଶୟନ,
ତୋ ସେବାରେ ରତ କେତେ ସେବାୟତ
ରହିଛୁ ଆନନ୍ଦେ ତୁହି ।
କାହିଁ କେତେ ଦୂର ଆସନ୍ତି ଭକତେ
ତୋର ଦରଶନ ପାଇଁ ।। ୩ ।।

ତୋ ରୂପ କାଳିଆ ମୋ ରୂପ କାଳିଆ
ନାହିଁ ତ କିଛି ଅନ୍ତର,
ତୁ କିପରି ଏତେ ସୁନ୍ଦର ହୋଇଲୁ
ମୁଁ କିପରି ଅସୁନ୍ଦର,
ତୋ ଯାଦୁ ମନ୍ତର ଦେଇଦେ ରେ ମତେ
ମୋ ଦୁଃଖ ଯିବ ଉଭେଇ ।
କାହିଁ କେତେ ଦୂରୁ ଆସନ୍ତି ଭକତେ
ତୋର ଦରଶନ ପାଇଁ ।। ୪ ।।

***

॥ ୧୪ ॥

# କାଳିଆ

ଯାହା ମୁଁ ମାଗିଛି ଯେବେ ମୁଁ ମାଗିଛି
ସବୁତ ଦେଇଛୁ ମୋତେ,
ଆଉ ମାଗିବାକୁ ଲାଜ ଲାଗେ କାଳେ
ମନା କରି ଦେବୁ ମୋତେରେ କାଳିଆ
ମନା କରିଦେବୁ ମୋତେ ॥ ୦ ॥

ଥିଲି ଆଶା କରି ଯାଆନ୍ତି କି ପୁରୀ
ଦେଖନ୍ତି ତୋ ଶ୍ରୀମନ୍ଦିର,
ଆନନ୍ଦ ବଜାରେ ଖାଆନ୍ତି ଅବଢା
ଦେଖନ୍ତି ବଡ଼ ସିଂହାର,
ଅଛି ମୋ ଭରସା ପୂର୍ଣ୍ଣ ହେବ ଆଶା
ବିଶ୍ୱାସ ରହିଛି ଚିତ୍ତେ ରେ କାଳିଆ
ବିଶ୍ୱାସ ରହିଛି ଚିତ୍ତେ ।
ଯାହା ମୁଁ ମାଗିଛି ଯେବେ ... ॥ ୧ ॥

ତୋର ଦାଣ୍ଡ ଧୂଳି ମୋ ଦେହରେ ବୋଳି
ନରେନ୍ଦ୍ରେ କରନ୍ତି ସ୍ନାନ,
ତୋ ରଥ ଦଉଡ଼ି ମୋ ଅଣ୍ଟାରେ ଭିଡ଼ି
ଟାଣିବାକୁ ହୁଏ ମନ,
ତୁଟ ଇଚ୍ଛାମୟ ଚିହ୍ନଉ ହୃଦୟ
କି କହିବି ଆଉ ତତେରେ କାଳିଆ
କି କହିବି ଆଉ ତତେ ।
ଯାହା ମୁଁ ମାଗିଛି ଯେବେ ... ॥ ୨ ॥

❋❋❋

॥ ୧୫ ॥

# ତୁମରି ଦାନ

ଜଗବନ୍ଧୁ ହେ ଜଗବନ୍ଦନ,
ଜଗବନ୍ଧୁ ହେ ଜଗବନ୍ଦନ ॥ ୦ ॥

ମୋ ହୃଦୟେ ସ୍ପନ୍ଦନ ତୁମରି ଦାନ
ମୋ ମନରେ ଚିନ୍ତନ ତୁମରି ଦାନ
ମୋ ନୟନେ ଦର୍ଶନ କର୍ଣ୍ଣରେ ଶ୍ରବଣ
ମୋ ନାସାରେ ଆଘ୍ରାଣ ତୁମରି ଦାନ ।
ଜଗବନ୍ଧୁ ହେ ଜଗବନ୍ଦନ,
ଜଗବନ୍ଧୁ ହେ ଜଗବନ୍ଦନ ॥ ୧ ॥

ମୋ ଜୀଭେ ଆସ୍ୱାଦନ ତୁମରି ଦାନ
ମୋ ତୁଣ୍ଡରେ ଅଶନ ତୁମରି ଦାନ
ମୋ ହସ୍ତେ ଆଲିଙ୍ଗନ ପାଦରେ ଗମନ
ମୋ ଶୟନେ ସପନ ତୁମରି ଦାନ ।
ଜଗବନ୍ଧୁ ହେ ଜଗବନ୍ଦନ,
ଜଗବନ୍ଧୁ ହେ ଜଗବନ୍ଦନ ॥ ୨ ॥

ମୋ ଦୁଃଖରେ କ୍ରନ୍ଦନ ତୁମରି ଦାନ
ମୋ ବିଳାସେ ବ୍ୟସନ ତୁମରି ଦାନ
ମୋ ଭାଗ୍ୟର ଲିଖନ ମୋ କର୍ମର କାରଣ
ମୋ ମୃତ୍ୟୁରେ ନିର୍ବାଣ ତୁମରି ଦାନ ।
ଜଗବନ୍ଧୁ ହେ ଜଗବନ୍ଦନ,
ଜଗବନ୍ଧୁ ହେ ଜଗବନ୍ଦନ ॥ ୩ ॥

***

॥ ୧୬ ॥

# ବନ୍ଧନ ଦିଅ ଖୋଲି

ବନ୍ଧନ ଦିଅ ଖୋଲି ଆହେ ପ୍ରଭୁ
ବନ୍ଧନ ଦିଅ ଖୋଲି ।
ଖୋଲିଦେଲେ ଥରେ ଉଡି ମୁଁ ଯାଆନ୍ତି
ମୁକ୍ତ ବିହଙ୍ଗ ଭଳି ॥ ୦ ॥

ସଂସାର ବନ୍ଧନେ ବାନ୍ଧିଦେଇ ମୋତେ
ଦେଖୁଅଛ ବସି ନାଟ ।
ପଡି ଉଠି ଧାଏଁ ଏ ଜୀବନ ପଥେ
ପ୍ରତି ପଦରେ ସଙ୍କଟ ।
କାଇଁ ଏତେ ଦୁଃଖ ଦେଉଅଛ ପ୍ରଭୁ
କି ଦୋଷ କରିଛି ବୋଲି ?
ବନ୍ଧନ ଦିଅ ଖୋଲି ଆହେ ପ୍ରଭୁ
ବନ୍ଧନ ଦିଅ ଖୋଲି ॥ ୧ ॥

ଦୁଃଖରେ ରଖିଛ କିପରି ଡାକିବି
ତୁମକୁ ଦୁଃଖନାଶନ ।
ଯାହା ଇଚ୍ଛା ତୁମ କର ଆହେ ପ୍ରଭୁ
ନାହିଁ ମୋର ଅଭିମାନ ।
କିଏ ଦେଇଦେଲା ମୁଁ ଅବା ନ ଦେବା
ପାଇଁ ଏତେ ସହି ହେଲି ।
ବନ୍ଧନ ଦିଅ ଖୋଲି ଆହେ ପ୍ରଭୁ
ବନ୍ଧନ ଦିଅ ଖୋଲି ॥ ୨ ॥

***

॥ ୧୭ ॥

# ମନେ ପଡେ ଆଜି

ସତ କହିବକି ଆହେ ଭଗବାନ
ଯାହା ଦେଇଥିଲ ସବୁ ତ ନେଲଣି
ଫେରାଇବକି ମୋ ପିଲାଦିନ ?
ମନେପଡେ ଆଜି ଶୈଶବର ସେ କୋମଳତା
ନିଷ୍କପଟ ସେ କିଶୋର ମନର ଚପଳତା
ଗାଁ ଦାଣ୍ଡ ଧୂଳି ପିଲା ଖେଳ
ବିଲ ବନ ଭୂଇଁ ନଈ ନାଳ
ଅସଜଡା ଯେତେ ସ୍ମୃତିର ପାଖୁଡା
ମନେ ମୋର ଆଣେ ଆଲୋଡନ ।
ସତ କହିବକି ଆହେ ଭଗବାନ ॥

ରଜ ଦୋଳି ଖେଳ ପୋଡପିଠା
ଦୀପାବଳୀର ସେ ବାଣ ଫୁଟା
କାର୍ତ୍ତିକ ରାହାସ ଡଙ୍ଗାଭସା
ମାର୍ଗଶୀର ମାସ ମାଣବସା
ଜାଗର ଜାତରା ଦୋଳ ଫଗୁଖେଳ
ଗୋଟି ଗୋଟି ଆଜି ପଡେ ମନ ।
ସତ କହିବକି ଆହେ ଭଗବାନ ॥

ବୟସ ମୋ ଆଜି ଅତିକ୍ରାନ୍ତ
ଜୀବନ ସଂଧ୍ୟାରେ ଉପନୀତ
ଶରୀରେ ମୋ ଆଉ ନାହିଁ ଶକ୍ତି
ପଡିଗଲାଣି ମୋ ଦାନ୍ତ ପଂକ୍ତି
ଲୋଳିତ ଏ ଚର୍ମ ପକ୍ୱ କେଶ ନେଇ
ବଞ୍ଚିବାକୁ ପୁଣି ହୁଏ ମନ ।
ସତ କହିବକି ଆହେ ଭଗବାନ ।

***

॥ ୧୮ ॥

# ପ୍ରବଞ୍ଚନା

( ୧ )

ଚେନାଏଁ ଫଗୁଣ ତୁମେ
ଆସିଲ ଏ ଜୀବନରେ
କେତେ ଆଶା ଆଲୋକର
ଦୀପାଳୀ ଜଳାଇ,
କେତେ ଆମ୍ବ ଡାଳେ କୋଇଲିର
କୁହୁତାନେ ଗାଇ,
କେତେ କମଳିନୀ ହୃଦେ ପ୍ରଣୟର
ଆଶା ଜନମାଇ ।।

ଆଗମନେ ତୁମ
ମତୁଆଲା ମନ ମୋର
ତୁମର ପରଶ ପାଇ
ଅକୁହା ଆବେଗରେ ଧଇଁ ସଇଁ ହୋଇ
କେତେ କେତେ ଖିଆଲୀ ସ୍ୱପ୍ନର
ଅସୁମାରୀ ଚିତ୍ର ନେଇ
କଳ୍ପନାର ପ୍ରଣୟ ସଞ୍ଚାରି
ଶ୍ରାବଣର ସବୁଜିମା ଢାଳି ଦେଇ ଦେଇ
ଅସୁମାରୀ ତୂଳୀ ସମାବେଶେ
ରଙ୍ଗାଇଲା ମୋର ଚଲାପଥ ।।

ଫଗୁଣଗୋ ତୁମେ
କେତେ ଯେ ପୁଲକ ଜଗାଇଲ ମନେ
ଦେଖାଇଲ କେତେ ନୂଆ ସୁନେଲି ସପନ

ଭରି ଦେଇଗଲ କେତେ କବିର କଳ୍ପନା ମନେ
ଗାଇଗଲି କେତେ ଗୀତ ସୁର ତୋଳି
ମୃଦୁ ମନ୍ଦ ମଳୟରେ ଛନ୍ଦେ ।।

(୨)

କିନ୍ତୁ ଗୋ ଫଗୁଣ
କେତେ ଯେ ନିଷ୍ଠୁର ତୁମେ
ଆଗମନେ ତୁମ–
ତୋଳି ଥିଲି ଯେତେ ସୁର
ବାଇଥିଲି ଯେତେ ସାହାନାଇ
ଆଙ୍କିଥିଲି ଯେତେ ନକ୍ସା
ରଚିଥିଲି ଯେତେ ପିରାମିଡ୍
ପ୍ରଣୟର ଆଶା ନେଇ
ଭରିଥିଲି ଯେତେ ସବୁଜିମା
ସବୁ ହେଲା ବୃଥା ।।

ଉଭେଇଲା କୁହୁତାନ
ଲିଭିଲା ସେ ଆଶାର ଦୀପାଳି
ଋତୁ ଚକ୍ର ନିୟମରେ
କ୍ରମେ ତମେ ଅପସରି ଗଲ –
ବିଦାୟ ଜଣାଇ
ନିଦାଘର କାନେ କହି କହି ।।

ହଜିଲା ସେ କ୍ଷଣିକ ଉନ୍ମାଦନା
ମତୁଆଲା ନିଶା ତୁଟିଗଲା
କଳ୍ପନାର ପ୍ରୀଙ୍କା ମୋର
ପ୍ରଣୟ ତା ଦୂରେ ଥାଉ
ରୌଦ୍ର ସମ ଦାରିଦ୍ର୍ୟ ମୋ ଦେଖି

ସ୍ମିତ ହାସ୍ୟେ ପରିହାସ କଲା ।
ନିଦାଘର ସାଇଁ ସାଇଁ ଖରାବେଳେ
ଧାଇଁଲି ମୁଁ ଅସରନ୍ତି ମରୁପଥ
ତୃଷା ମୋ ମେଣ୍ଟିବା ଦୂରେ ଥାଉ
ହଜାଇଲି ପଥ ମୋର ମୃଗତୃଷ୍ଣା କୋଳେ ।।

ଫଗୁଣ ଗୋ ତୁମେ –
ଦେଇଥିଲ ସବୁ କିଛି ନେଇ ବି ଯାଇଛ ।
ବିଦାୟ ବେଳାରେ ଉପହାର
ଦେଇଗଲ କେବଳ ଏତିକି –
ଶୂନ୍ୟ ଏ ଆକାଶ ଆଉ ମୁଠାଏ
ପ୍ରବଞ୍ଚନା ।।



॥ ୧୯ ॥

# ଯଉବନ

କେତେବେଳେ ଅଜାଣତେ
ଛୁଇଁଦେଇ ଗଲା ମତେ
ଅମାନିଆ ଚଇତି ପବନ ।
ମନ ମୋ ଚହଲିଗଲା
ଦେହ ରଙ୍ଗ ବଦଳିଲା
ଛୁଇଁଲା କି ମତେ ଯଉବନ ?
ହାଏ ଶେଷ ହେଲା
ମୋର ପିଲାଦିନ ।୧।

ଆଖି ମୋର ଲାଜକଲା
ଚାଲି ମୋ ବଦଳିଗଲା
ନ ଶୋଇ ମୁଁ ଦେଖିଲି ସପନ ।
ସରିଲା ମୋ ପିଲାଖେଳ
ଗୋଲବସର ର ବେଳ
ବୁକୁତଳେ କେତେ ଯେ ସ୍ପନ୍ଦନ ।
ଛୁଇଁଲା କି ମତେ ଯଉବନ ?
ହାଏ ଶେଷ ହେଲା
ମୋର ପିଲାଦିନ ।୨।

ଫୁଲ ହୋଇ ଫୁଟିଲି ମୁଁ
ଏ ଦୁନିଆ ବଗିଚାରେ
ମହକାଇ ସାରା ଉପବନ ।
କେତେ ରଙ୍ଗେ ପ୍ରଜାପତି
ଉଡନ୍ତି ମୋ ପାଶେ ଆସି
ଅଙ୍ଗେ ମୋର ଜାଗେ ଶିହରଣ ।
ଛୁଇଁଲାକି ମତେ ଯଉବନ ?
ହାଏ ଶେଷ ହେଲା
ମୋର ପିଲାଦିନ ।୩।

❋❋❋

॥ ୨୦ ॥

# ତୁମ ପାଇଁ ପଦେ

ତୁମ ନରମ ହାତର ଉଷ୍ମ ପରଶ
ତନୁ ମନ ଶିହରାଇ ଦିଏ ।
ତୁମ ନାଲି ଅଧରରେ ମୁରୁକି ହସଟି
କୋଟୀ ଜନ ମନ ମୋହି ନିଏ ।୦।
ତୁମ ଚୂର୍ଣ୍ଣ, କୁନ୍ତଳର କାଳିମାରେ
ଅମା ଅନ୍ଧାର ଯାଏ ଲାଜେଇ
ତୁମ ନୀଳ ନୟନରେ ନୀଳିମାରେ
ନୀଳ ଆକାଶ ହୁଅଇ ସଜେଇ
ତୁମ ଚୋରା ଚାହାଣିରେ ମନ ମୋ ଚହଲେ
ସପନର ଜାଲ ବୁଣିଯାଏ ।
ତୁମ ନରମ ହାତର ଉଷ୍ମ ପରଶ
ତନୁ ମନ ଶିହରାଇ ଦିଏ ।୧।
ତୁମ କଣ୍ଠେ କୋଇଲିର କୁହୁ ତାନ
ତୁମ କଥାରେ ଝରଇ ମଧୁ
ତୁମେ ଚାଲିଲେ ଚପଳଛନ୍ଦା ଗୋ
ତୁମେ ହୋଇବ କାହାର ବଧୂ
କେତେ ଯତନରେ ଗଢ଼ିଅଛି ବିହି
ଦେଖି ସବୁ ଆଖି ଲାଖି ଯାଏ ।
ତୁମ ନରମ ହାତର ଉଷ୍ମ ପରଶ
ତନୁ ମନ ଶିହରାଇ ଦିଏ ।୨।
ଚାନ୍ଦ ନୁହେଁ ତୁମେ ଚାନ୍ଦଠୁ ଅଧିକ
ଚାନ୍ଦରେ ଲାଗିଛି କଳଙ୍କ
ସୂର୍ଯ୍ୟମୁଖୀ ବୋଲି କହିବି କିପରି
ତହିଁରେ ଭରିଛି ଡ଼ହକ
କହି ନ ଥିଲି ଯା ଆଜି ମୁଁ କହୁଛି
ତୁମକୁ ଭାରି ଭଲ ପାଏ ।
ତୁମ ନରମ ହାତର ଉଷ୍ମ ପରଶ
ତନୁ ମନ ଶିହରଇ ଦିଏ ।୩।

❋❋❋

॥ ୨୧ ॥

# ପ୍ରଥମ ପାହାଚ

ସେ ଦିନ ସେ ଗୋଲେଇ ଛକଟା
ପାରହୋଇ ଗଲା ପରେ,
ହାତଠାରି ଅଟକାଇ ଦେଲ ମୋତେ ତୁମେ ।
ଜଣେ ମହିଳା ସହକର୍ମୀଙ୍କୁ ଦେଖି,
ଅଟକି ମୁଁ ଯାଇଥିଲି ନିସଂକୋଚରେ,
ଆଉ ମୁଁ କିଛି କହିବା ପୂର୍ବରୁ,
ତୁମେ ବସି ସାରିଥିଲ –
ମୋ ବାଇକ୍‌ର ପଛ ସିଟ୍‌ରେ ।।

ଅଳ୍ପ କେତୋଟି ବର୍ଷ ପରେ –
ଆମେ ଦୁହେଁ ସାଥୀ ହୋଇ ଯାଇଥିଲେ
ଏ ସାରା ଜୀବନ ପାଇଁ,
ଆଉ ସେଦିନର ଘଟଣାଟି ଥିଲା –
ଆମ ପ୍ରେମର ପ୍ରଥମ ପାହାଚ ବୋଲି
କହିଥିଲ ତୁମେ ବିନା ସଂକୋଚରେ
ଆମ ବାସର ରାତିରେ ।।

***

॥ ୨୨ ॥

# ପ୍ରେମ ରୋଗ

ଆଖିରେ ଆଖି ମିଶାଇ ଯେବେ
ଟିକିଏ ହସିଦେଲ,
ସେ ଦିନୁ ମୋର ଆଖିର ନିଦ
ସବୁ ଉଡାଇ ନେଲ ।।

ଚିହ୍ନା ଚିହ୍ନା ଲାଗିଲା ବୋଲି
ମୁଁ ବି ହସିଦେଲି ।
ଜାଣିନି ତୁମ ନାମ ଠିକଣା
କି କାମ କର ବୋଲି ।।

ଧରିଲେ ବହି ଆଖି ଆଗରେ
ନାଚେ ତୁମର ମୁହଁ ।
କି ପାଠ ଆଉ ପଢିବି ଏବେ
କରିବି କଣ କୁହ ।।

ଭାବୁଛି ମନେ କିପରି ତୁମ
ସଙ୍ଗେ ହୁଅନ୍ତା ଦେଖା ।
ଖୋଲି ମୁଁ କହି ଦିଅନ୍ତି
ଭଲ ପାଏ ତୁମକୁ ଏକା ।।

ମୋ ରଙ୍ଗ ଢଙ୍ଗ ଦେଖି ମୋ ବୋଉ
ମନେ ଛାନିଆ ପଶେ ।
କହେ ସେ ଆଜି କାଲି ମୋ ଝିଅ
ଶୁଖିଲା କାହିଁ ଦିଶେ ।।

ପାଠ ଚିନ୍ତାରେ ଝିଅ ମୋ ଆଜି
ଏପରି ଦିଶିଲାଣି ।
କିଏ କହିବ ଝିଅ ତା ପ୍ରେମ
ପାଠରେ ପାଗଳିନୀ ।।

***

॥ ୨୩ ॥

# ଭୁଲି ହୁଏନା

ନିକଟରେ ଥିଲି ଯେତେବେଳେ
ଏତେ ଭଲ ପାଉଥିଲ ବୋଲି
କେବେ ବି ତ କରିନ ଇଶାରା ।
ସେଠାରୁ ଆସିବାର ବହୁଦିନ ପରେ,
ଅକସ୍ମାତ ଯେବେ ଦେଖାହେଲା,
ଡାକି ତୁମେ କଥା ହେଲା,
ଆଖିରୁ ତୁମର ବହିଗଲା ଦୁଇ ଧାର ଲୁହ
ଆଉ ତୁମେ ପଡିଗଲ ଧରା ।।

ଜାଣି ମୁଁ ନ ଥିଲି
ତୁମେ ଏତେ ଭଲପାଅ ବୋଲି ।
ସେପରି ମୁଁ କେବେ ଭାବିବି ନ ଥିଲି।।

କିନ୍ତୁ ସବୁ କିଛି ବଦଳିଗଲା ଅଳ୍ପ ସମୟରେ ।
ଚକ୍ରବାକ ପରି ତୁମେ ପଶି ଆସିଲ
ମୋ ଜୀବନର ପରିଧି ଭିତରେ ।।

ଦୁଇ ପଦ କଥା ହେଲା ପରେ
ତୁମେ ସବୁ ଜାଣି ଯାଇଥିଲ,
ଆଉ ଲୁହ ଛଳ ଛଳ ହୋଇ
ଚାଲି ଯାଇଥିଲ ।।

ମୁଁ ବି ଫେରି ଆସିଥିଲି ।
ହେଲେ ଯାହା ସବୁ ଘଟିଗଲା
ସେଇ କିଛି ମୁହୂର୍ତ୍ତରେ,
ମୋ ମନରେ ରହିଅଛି ସ୍ମୃତି ହୋଇ
ରହିଥିବ ଏ ଜୀବନ ସାରା
ପାରିବିନି ଭୁଲି ।।

***

॥ ୨୪ ॥

# ପ୍ରେମ

ପ୍ରେମ ଜାଣେ ନାହିଁ ସୀମା ସରହଦ
ଧର୍ମ ଗୋତ୍ର ଅବା ଜାତି ।
ପ୍ରେମ ହୋଇଗଲେ ମନରେ ଉତ୍ତାପ
ଦେହରେ ନ ଥାଏ ତାତି ।୧।
ପ୍ରେମ ଆଇନାରେ ସବୁ ରଙ୍ଗ ଏକା
ଦିଶେ ଗୋଲାପି ଗୋଲାପି ।
ପ୍ରେମ ଲୁଚାଇଲେ ବାସି ଚହଟଇ
ରହେ ନାହିଁ କେବେ ଛପି ।୨।
ପ୍ରେମ ପିଆଲାରେ ଯାହା ବି ପିଇଲେ
ଲାଗୁଥାଏ ମିଠା ମିଠା ।
ପ୍ରେମ ନଦୀ ସଦା କୁଆରିଆ ଥାଏ
ପଡେନାହିଁ କେବେ ଭଟ୍ଟା ।୩।
ପ୍ରେମ ନୁହେଁ ବହ୍ନି ଦହଇ ଶରୀର
ମନ ହୁଅଇ ଅସ୍ଥିର ।
ପ୍ରେମ ନୁହେଁ ଅସ୍ତ୍ର ମରମ ଭେଦଇ
ବାଜିଗଲେ ପ୍ରେମ ତୀର ।୪।
ପ୍ରେମମାନେ ନାହିଁ ଉଚ୍ଚ ନୀଚ ଭେଦ
କିଏ ବଡ କିଏ ସାନ ।
ପ୍ରେମ ଆକାଶରେ ସବୁବେଳେ ହସେ
ଶରଦ ଉଦିଆ ଜହ୍ନ ।୫।
ପ୍ରେମ ଯେ ଶାଶ୍ୱତ ପ୍ରେମ ଚିରନ୍ତନ
ପ୍ରେମ ଅମୃତର ଧାରା ।
ପ୍ରେମରେ ପାଗଳୀ ହୋଇଥିଲେ ଦିନେ
ପ୍ରେମମୟୀ ରାଧା ମୀରା ।୬।
ପ୍ରେମ ବନ୍ଧନରେ ବାନ୍ଧିହୁଅ ସର୍ବେ
ପ୍ରେମର ହେଉ ଜୟ ।
ଶାନ୍ତି ସଦ୍ଭାବନା ଉଜ୍ଜୀବିତ ହେଉ
ହଟୁ ଆତଙ୍କର ଭୟ ।୭।

***

॥ ୨୫ ॥

# ପ୍ରେମର ଅସର

ପଦ୍ମ ପତ୍ର ପରେ ଜଳ
ଢଳ ଢଳ ହେଲାପରି
ଢଳ ଢଳ ହେଉଥିଲା
ତୁମ ଦୁଇ ନୟନରେ ଡୋଳା,
ଯେପରି ନାଗୁଣୀର ଫଣା
ଏପଟ ସେପଟ ହୁଏ
ଶୁଣୁ ଶୁଣୁ ସାପୁଆ କେଳାର
ପଦ୍ମତୋଳା ।।

ନାଗୁଣୀ ତ ବଶୀଭୂତ ହୁଏ
ପଦ୍ମତୋଳାର ସୁରେ ସୁରେ ।
ଆଉ କେଉଁ ପଦ୍ମତୋଳା ଶୁଣି
ତୁମେ ଥିଲ ବିବ୍ରତ ଚଞ୍ଚଳ
କହିବକି ଥରେ ?

ତୁମେ ଅପେକ୍ଷା ମୋ ଉପରେ
ଲୋକଙ୍କର ପଡୁଥିଲା
ଅଧିକ ନଜର ।
କେହି ବି ତ କିଛି
ପଚାରି ନ ଥିଲେ ମୋତେ,
ବୋଧ ହୁଏ ସେମାନେ
ଭଲଭାବେ ବୁଝି ପାରିଥିଲେ,
ଏସବୁ ଆଉ କିଛି ନୁହେଁ
କେବଳ ପ୍ରେମର ଅସର ।।

***

॥ ୨୬ ॥

# ସପନ ବଣିକ

ମନର ନଉକା ମୋର
ସପନ ସମ୍ଭାର ନେଇ
ଭାସୁଥିଲା ତୁମ ହୃଦୟ ସାଗରେ
ସପନ ବିକିବା ପାଇଁ ।୧।

ଆଲୋକ ବର୍ତ୍ତିକା ସମ
ତୁମ ଆଖିର ଇଶାରା
ବାଟ କଢାଇଲା ମଝି ଦରିଆରୁ
ହୋଇନି ମୁଁ ଦିଗହରା ।୨।

ଅଶାନ୍ତ ଉଚ୍ଚ ତରଙ୍ଗ
ଝଡ କି ଅବା ବତାସ
ରୋକି ନାହିଁ ପଥ ପହଞ୍ଚିଛି କୂଳେ
ଥିବାରୁ ଆତ୍ମ ବିଶ୍ୱାସ ।୩।

ସଜାଇ ଦେଇଛି କୂଳେ
ସପନ ପସରା ମୋର ।
ସୁନେଲି ରୂପେଲି ଆବରଣ ତଳେ
କେତେ ଯେ ସ୍ୱପ୍ନ ସମ୍ଭାର ।୪।

ତୁମ ବାଟ ଚାହିଁ ଆଜି
ବସିଛି ସାଗର ତୀରେ ।
ଆସିବ ପରଖି ସପନ କିଣିବ
ଫେରିଯିବ ନିଜ ଘରେ ।୫।

ଭାବୁଥିଲି ମନେ ମନେ
ଆସି ନିତି ପ୍ରତିଦିନ
ସପନ ସଉଦା କରିବ ଦେଖି ମୋ
ଖୁସୀ ହେଉଥିବ ମନ ।୬।

ପ୍ରତୀକ୍ଷାର ହେଲା ଅନ୍ତ
ଆସିଲ ତ ଏକା ଏକା
ମୋ ମନ ନଉକା ପୁରା କିଣିନେଲ
ସପନ ସରିଲା ବିକା ।୭।

***

॥ ୨୭ ॥

# ତୁମେ ଚାଲିଗଲା ପରେ

(୧)

ସପନରେ ଆସିଥିଲ ତୁମେ
ଦେଖିଲି ତୁମକୁ ।
ମୋର ସବୁ ଅସୁବିଧା ଦେଖି
ତୁମେ ମୋତେ ଡାକୁଥିଲ
ଯିବାପାଇଁ ତୁମ ନିକଟକୁ ।।

ତୁମକୁ ଦେଖି ମୋ ମନ
ଖୁସି ହୋଇଗଲା ।
ଧଳା ଶାଢୀ ପିନ୍ଧିଥିଲ ତୁମେ
କରିଥିଲ କେଶକୁ ମୁକୁଳା ।
ଆଉ ତୁମ ମଥାରେ
ସେ ସିନ୍ଦୂର ଟୋପାଟା
ମୋ ମୁହଁକୁ ଚାହିଁ ରହିଥିଲା ।।

ତା ଚାହିଁବା କାରଣଟା
ମୁଁ ଠିକ୍ ବୁଝି ପାରିଥିଲି ।
ରାଗ ଅଭିମାନେ ଟିକେ କଣ କହିଦେଲେ
ଏକୁଟିଆ ମୋତେ ଛାଡି ଚାଲିଯିବ ବୋଲି
ଜାଣି ମୁଁ ନଥିଲି ।।

ହଁ ତୁମେ ପରା କହୁଥିଲ –
ଆମ ଏ ବନ୍ଧନ ନୁହେଁ ଦିନେ ଦିଦିନର
ଏହା ଜନ୍ମ ଜନ୍ମାନ୍ତର ପାଇଁ –
ପୁରା ସାତ ଜନମର ।।

(୨)

ତୁମେ ଗଲା ପରେ ଏଠି ଫଗୁଣ ଆସିନି ।
ଶୀତ ପରେ ବୃକ୍ଷ ସବୁ
ପତ୍ର ଝଡା ଦେଲାପରେ
ଆଉ ନୂଆ ପତ୍ର କଅଁଳିନି ।।

ଏଠି ଖାଲି ନିଦାଘର
ଟାଇଁ ଟାଇଁ ଖରା ।
ଭିଜିନାହିଁ ମାଟି ଏଠି
ଚାରିଆଡେ ଦିଶେ ମରା ମରା ।।

ଡାକୁଛ ଯେହେତୁ
ନିଶ୍ଚୟତ ଯିବି ମୁହିଁ ।
ହେଲେ ଏବେ ମୋ ଅବସ୍ଥା
ଦେଖୁଛ ତ ତମେ
ତୁମ ସଙ୍ଗେ ଚାଲି ଚାଲି ଯିବାକୁ
ମୋ ବଳ ପାଉନାହିଁ ।।

ଯିବି ମୁଁ ଏ ଜୀବନ ଯାତ୍ରା ସରିଗଲା ପରେ
କୋକେଇ ଉପରେ ଶୋଇ ଶୋଇ ।
କାନ୍ଧେ ବୋହି ନେଉଥିବେ
ମୋ ବନ୍ଧୁ ବାନ୍ଧବେ ଚାଲି ଚାଲି
ବଡଦାଣ୍ଡେ "ରାମ ନାମ ସତ୍ୟ" ବୋଲି
ତୁଣ୍ଡେ କହି କହି ।।

***.

॥ ୨୮ ॥

# ଅଭିଶପ୍ତା

ସବୁ ରକ୍ତ ସମ୍ପର୍କକୁ ଛିନ୍ନ କରି
ତୁମ ନାମେ ପିନ୍ଧିଥିଲି
ଦୁଇପଟ ଶଙ୍ଖା ଆଉ
ଟୋପାଏ ସିନ୍ଦୂର ।।

ଯେଉଁ ଦିନ ତୁମ ସହ
ଏଗୁଣ୍ଠିବନ୍ଧ ଟପି
ତୁମ ଘରେ ପାଦଦେଲି
ସେଦିନ ମୁଁ ଭାବିଥିଲି–
ଏ ଘର ମୋ ଘର ଆଉ
ତୁମେ ମୋର ଚିରଦିନ
ମୁଁ ତୁମ ନିଜର ।।

ସ୍ୱପ୍ନ ଥିଲା ....
ତୁମକୁ ପାଇ ମୁଁ
ଗଢ଼ିବି ମୋର ଏକ
ସୁନାର ସଂସାର ।
ଶାଶୂ ଶ୍ୱଶୁର ନଣନ୍ଦ
ସଭିଙ୍କୁ ନିଜର କରି
କଟିଯିବ ସୁଖେ ଦିନ ମୋର ।।

ସଜ ଗୋଲାପଟିଏ ମୁଁ
ଫୁଟିଥିଲି ଏ ଦୁନିଆ ବଗିଚାରେ
କେବଳ ତୁମରି ପାଇଁ ।
ହେଲେ ଆଜି ବୃନ୍ତଚ୍ୟୁତ
କ୍ଷତାକ୍ତ ମୋ ପାଖୁଡ଼ା ସବୁ
ପଡ଼ିଛନ୍ତି ଇତସ୍ତତଃ
ବିକ୍ଷୁରିତ ହୋଇ ।।

ତୁମ ପାଇଁ ସମର୍ପିତ
ଥିଲା ଯେଉଁ ଫୁଲ
କିପରି ଟେକିଦେଲ
ଅନ୍ୟ କାହା ହାତେ
କରି ମୂଲଚାଲ ?

ଭୁଲ କରିଥିଲା
ତୁମକୁ ଚିହ୍ନିବାରେ
ମୋର ଦୁଇ ଆଖି ।
ଜାଣି ପାରି ନ ଥିଲି ମୁଁ
ମୋ ଜୀବନ ଆକାଶରେ
ଘୁରି ବୁଲୁଥିଲା ଏକ
କାଳ ବୈଶାଖୀ ।।

ପଛକୁ ଫେରିବାକୁ
ନ ଥିଲା ମୋ ବାଟ ।
ବେଦନା-ସିକ୍ତ
ଏ ଜୀବନ ଯାତ୍ରାରେ
ଆଜି ମୁଁ କ୍ଳାନ୍ତ ଆଉ
ହୁଏ ଛଟପଟ ।।

ନାରୀ ଜନ୍ମ ଏ ସମାଜେ
ଚିରଦିନ କଣ ଅଭିଶପ୍ତ ?
ଝୁଣି ଖାଉଥିବେ ତାକୁ
ଏ ଶ୍ୱାନ ଶୃଗାଳ ସବୁ
ହୋଇ ଏକତ୍ରିତ ।।

***

॥ ୨୯ ॥

# ଅସହିଷ୍ଣୁ ଆଭିଜାତ୍ୟ

ଜାତି ଆଉ ବଂଶ ଆଭିଜାତ୍ୟ
ମଣିଷକୁ ଦିଏ ଅନ୍ଧକରି ।
ଭୁଲି ନିଜ ରକ୍ତ ଆଉ ମମତାର ଡୋରି
କମ୍ପେ ନାହିଁ ପିତା ହାତ
ଖେଳିବାକୁ ନିଜ ସନ୍ତାନ
ରକ୍ତରେ ହୋରି ।।

ତୁମେ ଠିକ୍ ଜାଣି ପାରିଥିଲ,
ଆଉ ମୃତ୍ୟୁର ଅତି ନିକଟରୁ,
କିଟ୍-ମିଟ୍ ଅନ୍ଧାରର ଛାତି ଚିରି
ଧାଇଁ ଆସିଥିଲ ମୋ ନିକଟକୁ ।
ଆମେ ଦୁହେଁ ଘର ଛାଡି
ଚାଲି ଆସିଥିଲେ
ଦୂରକୁ ଅନେକ ଦୂରକୁ,
ସମୟ ନ ଥିଲା ପଛକୁ
ଫେରି ଚାହିଁବାକୁ ।।

ଜାତି ସଂସ୍କୃତିର
ଧ୍ୱଜାଧାରୀ ଜହ୍ଲାଦମାନେ,
ବଞ୍ଚିବାକୁ ଦେବେନି ଆମକୁ
ଖୋଜି ବୁଲିବେଣି ଜାଣିବାକୁ
ରହିଅଛୁ ଆମେ କେଉଁ ସ୍ଥାନେ ।।

ଶାସନର ଲମ୍ବାହାତ ଏମାନଙ୍କୁ
ପାରେନାହିଁ ଛୁଇଁ ।

ଏଠି ଖାଲି ରାଜନୀତି
ବଞ୍ଚିବାର ସ୍ୱାଧୀନତା ନାହିଁ ।।

ମଲା ପରେ ଏଠି ହୁଏ
ବଡା ହୋ ହଲ୍ଲା ।
ଲୋକ ଦେଖାଣିଆ ଲାଗି
ଆସନ୍ତି ନେତାଏ ଆଉ
ଭିଡ଼ ଲଗାନ୍ତି ଗଣ ମାଧ୍ୟମ ବାଲା ।।

ଏଠି ବଞ୍ଚିବା ଅପେକ୍ଷା
ମରିଯିବା ଭଲ ।
ରାତ୍ରି ଶେଷ ହେବାକୁ ଯାଉଛି,
ହେଲେ ଆମପାଇଁ ଶୁଭ ନୁହେଁ
ଆସନ୍ତାକାଲିର ସେ ନୂଆ ସକାଳ ।।

ଆସନ୍ତା ସକାଳର
ସେ ସୁନେଲି ସୂର୍ଯ୍ୟ କିରଣ,
ନଦେଖୁ ଆମ ରକ୍ତର ଶ୍ରାବଣ ।।

ଆସ ଆମେ
ଆଲିଙ୍ଗନ କରି ପରସ୍ପରେ,
ମିଶିଯିବା ସବୁଦିନ ପାଇଁ
ଏହି ନୀଳ ସାଗରର
ଲହରୀ କୋଳରେ ।।

***

॥ ୩୦ ॥

# କଳଙ୍କ

ଜହ୍ନ ତୋର କଳଙ୍କର ନିନ୍ଦା
କେବେ ବି ତ ଶୁଣିନି ମୁଁ କାନେ ।
ବରଂ ତୋର ପ୍ରଶଂସାରେ ଶତମୁଖ
ସବୁ କେହି ଏଠି,
ନିନ୍ଦୁକ ନାହିଁ କେହି ଜଣେ ।।

ମୋ ନାମେ କଳଙ୍କ ପାଇଁ
ବାଜେ କେତେ ନିନ୍ଦାର ବାଜଣା ।
କହିକି ପାରିବୁ ଜହ୍ନ
ତୋ କଳଙ୍କ ଓ ମୋ କଳଙ୍କ
ମଧ୍ୟରେ ଫରକ କଣ ?
ତୋ ସାଙ୍ଗେ ଅନେକ ତାରା
ଅଛନ୍ତି ସେଠାରେ ।
ଶୁଣିଛକି ମୋର ପ୍ରଶଂସା
କେହି କେବେ କରିଛନ୍ତି
ତୁମ ଦୁନିଆରେ ।।

***

॥ ୩୧ ॥

# ଉତ୍କଳ ସନ୍ତାନ

ସୁପ୍ତ କାହିଁକି ଉତ୍କଳ ସନ୍ତାନ
ଶିଥିଳ କି ତୋର ରକ୍ତ,
ଭୁଲି ଗଲୁଣିକି ତୋ ପୂର୍ବ ଗୌରବ
ଭୁଲି ଗଲୁକି ଅତୀତ ?
ତୋ ପୂର୍ବ ପୁରୁଷେ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ ।
ସେ ରକ୍ତରେ ଗଢା ଅଟେ ତୋ ଶରୀର
ଯାଉ ତୁ କାହିଁକି ଡରି ।।
ତୋ ରାଜ୍ୟ ସାଧବ ପୁଅମାନେ ଦିନେ
ସାଗରେ ବୋଇତ ମେଲି,
ଯାଉଥିଲେ ନୌ ବାଣିଜ୍ୟ ପାଇଁକି
ସୁମାତ୍ରା ବୋର୍ଣ୍ଣିଓ ବାଲି ।।
ଅତୀତର ସେଇ ଗୌରବ ଗାଥା
ଉଜ୍ଜୀବିତ କରି ମନେ,
ବୋଇତ ବନ୍ଦାଣ କରୁଛି ଓଡିଆ
କାର୍ତ୍ତିକ ପୂର୍ଣ୍ଣିମା ଦିନେ ।।
ପୁଣ୍ୟତୋୟା ମହାନଦୀ ବୈତରଣୀ
ସବୁର୍ଣ୍ଣରେଖା ବ୍ରାହ୍ମଣୀ,
ତୋ ରାଜ୍ୟର ବକ୍ଷେ ବହନ୍ତି ନୀରବେ
ଦେଇ ସୁମଧୁର ପାଣି ।।

ସୁଦୀର୍ଘ ସାଗର କୂଳ ତା ସାଙ୍ଗକୁ
ସୁନ୍ଦର ଚିଲିକା ହ୍ରଦ ।
ଭରି ରହିଅଛି ତୋ ରାଜ୍ୟରେ କେତେ
ଅମୂଲ୍ୟ ଖଣି ସମ୍ପଦ ।।
ତୋ ରାଜ୍ୟର ବଣ ପାହାଡ ଝରଣା
କେତେ ସୁଷମାରେ ଭରା ।
ମନ୍ଦିର ଗାତ୍ରରେ ସ୍ଥାପତ୍ୟ କଳାର
ସୌନ୍ଦର୍ଯ୍ୟ ଅପାଶୋରା ।।
ସେ କଳାର ମୂକସାକ୍ଷୀ ରୂପେ ଆଜି
ଭଗ୍ନ କୋଣାର୍କ ଠିଆ ।
ପଥର ଦେହରେ ଫୁଟିଅଛି କେତେ
ପୀରତିର ଦିଆ ନିଆ ।।
ତୋ ଭାଷା ସାହିତ୍ୟ ଅତି ଋଦ୍ଧିମନ୍ତ
ଶାସ୍ତ୍ରୀୟ ଭାଷାରେ ଗଣା ।
ପ୍ରଚାର ପ୍ରସାର ଅଭାବରୁ ଏହା
ନୁହେଁ ବେଶି ଜଣା ଶୁଣା ।।
ସବୁଥାଇ ଆଜି କାହିଁକି ସଜାଉ
ନିଜକୁ ଗରିବ ବେଶେ,
ମଥା ଟେକି ବାଟ ଚାଲିବାକୁ କୁଣ୍ଠା
କାହିଁକି କରୁ ଏ ଦେଶେ ।।
ବେଳ ନାହିଁ ଉଠ ଉତ୍କଳ ସନ୍ତାନ
ଶୋଇବୁ ତୁ କେତେ ଦିନ,
ସମୃଦ୍ଧ କର ଏ ଉତ୍କଳ ଭୂଇଁକୁ
ରଖ ନିଜ ସ୍ୱାଭିମାନ ।।

***

॥ ୩୨ ॥

# ଦେଶଦ୍ରୋହ

ଅଫ୍‌ଜଲ ତୁମେ ଦେଶଦ୍ରୋହ ଲାଗି
ପାଇଥିଲ ମୃତ୍ୟୁଦଣ୍ଡ ।
ଛାଡିଗଲ କିଛି ଚେଲା ଚାମୁଣ୍ଡାଙ୍କୁ
କରୁଛନ୍ତି ସେହି କାଣ୍ଡ ।।
ଭାରତ ବିରୋଧୀ ନାରା ସେ ଦିଅନ୍ତି
ଭାରତ ମାଟିରେ ରହି ।
ଭାବୁଛନ୍ତି ମନେ ଏ ଦେଶ ଜନତା
ନୀରବରେ ଯିବେ ସହି ।।
ଜେ.ଏନ.ୟୁ.କୁ ବିଷାକ୍ତ କରିଛ
ଦେଶଦ୍ରୋହ ନାରା ଦେଇ ।
ଯାଦବପୁରରେ ଦେଶ ବିରୋଧରେ
ଛାତ୍ର (rally) ରାଲି ବାହାରଇ ।
ଗଣତନ୍ତ୍ରରେ ବାକ୍ ସ୍ୱାଧୀନତା
ମାନେ କଣ ଦେଶଦ୍ରୋହ ?
କେଉଁ ସମ୍ବିଧାନେ ଲେଖାଅଛି ଏହା
ଜନତାଙ୍କୁ ବାରେ କୁହ ।।
ଭାବିଛକି ମନେ ଖସିଯିବ ଏଠୁ
ଏଇ କାରନାମା କରି ।
ଭୁଲିଯା ସେକାଳ ଆଉ ଏବେ ନାହିଁ
ପଠେଇ ଦେବେ ସେପାରି ।।

ଏ ଦେଶ ସଂସ୍କୃତି ଶିଖାଏନି କେବେ
ହିଂସା ଅସହିଷ୍ଣୁ ଭାବ ।
ସୀମା ଲଙ୍ଘିଗଲେ ଛାଡେ ନାହିଁ କେବେ
ଦିଏ ଠିକଣା ଜବାବ ।।
କୁସଙ୍ଗରେ ପଡି ବାଟ ବଣାହେଲେ
ଜୀବନଟା ହେବ ବ୍ୟର୍ଥ ।
ବେଳ ଥାଉଁ ଥାଉଁ ସୁଧାର ନିଜକୁ
ବୁଝ ଦେଶପ୍ରେମ ଅର୍ଥ ।।



(ତା ୯।୨।୨୦୧୬ରିଖ ଦିନ ଜେ.ଏନ୍.ୟୁ ପରିଶରରେ ଦେଶଦ୍ରୋହୀ ଆଫଜଲ୍ ଗୁରୁ ର ଜୟନ୍ତୀ ପାଳନ କରି ଦେଶ ବିରୋଧରେ ନାରା ଦେଇଥିବା କେତେକ ଛାତ୍ରନେତାଙ୍କ ଉଦ୍ଦେଶ୍ୟରେ ଲିଖିତ)

॥ ୩୩ ॥

# ପ୍ରଣତି

ସୁଜଳା ସୁଫଳା ଶସ୍ୟ ଶ୍ୟାମଳା
ତୁହି ମା ପବିତ୍ର ଭାରତ ଭୂମି,
ତୋର ଉପାଦାନେ ଗଢା ଯା ଶରୀର
ତୋ କୋଳରେ ଥିଲେ ଯେହୁ ଜନମି ।
ଯେ ବୀର ପୁଙ୍ଗରେ ଢାଳି ଦେହୁ ଲହୁ
ଲଢିଲେ ତୋହର ମୁକତି ପାଇଁ,
ଯା ହୃଦୟେ ମା ମମତା ସରିତ୍
ସମ ବହିଥିଲି ଉଛଳା ହୋଇ,
ଯେବୀର ହୋଇଲେ ଶହୀଦ ତୋଲାଗି
ଯେ ବରିଲେ କାରା ଗାଇ ତୋ ଗାଥା,
ଯେ ପ୍ରାଣୁ ଉଠିଲା ସ୍ୱାଧୀନତା ଉସ
କରିବାକୁ ଲୋପ ଫିରିଙ୍ଗ ସତ୍ତା,
ଯା ଅହିଂସା ବାଣୀ ସିଞ୍ଚି ମନ୍ତ୍ରପାଣି
ଜଗାଇଲା ସାରା ଦେଶେ ପୁଲକ,
ଯା ହୁଙ୍କାରେ ଦିନେ ଆଜାଦ ହିନ୍ଦ
ଫଉଜ ଡାକିଲା ଚଞ୍ଚ ମୂଳକ,
ଯାର ପଞ୍ଚଶୀଳ ପ୍ରଚାରିଲା ଦେଶେ
ଶାନ୍ତି ମୈତ୍ରୀର କବିତା ଗାଥା,
ଯେ ବୀର ଭଜିଲା ବିଦେଶ ଭୂଇଁରେ
ଶାନ୍ତି ପ୍ରଚାରି ମରଣ କଥା,
ଯେ ଦେଇ ମୁକତି ଲଭିଲେ ମୁକତି
ହୋଇଲେ ଏ ଦେଶେ ଚିର ଅମର
ପଞ୍ଚବିଂଶତିର ଏ ଶୁଭ ଲଗନେ
ସେ ଚରଣ ତଳେ ପ୍ରଣତି ମୋର ॥



(୧୯୭୨ ମସିହାରେ ସ୍ୱାଧୀନତା ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ଏହି କବିତା ଲେଖା ହୋଇଥିଲା)

॥ ୩୪ ॥

# ରାଜ ପ୍ରୀତି

ରାଜତନ୍ତ୍ର ଦେଶୁ ହଟାଇଲୁ ଆମେ
ବସାଇଲୁ ଗଣତନ୍ତ୍ର ।
ଆମ ଦେଶ ଆମେ ଶାସନ କରିବୁ
ଗାଇ ସମତାର ମନ୍ତ୍ର ।।
ଆମ ନେତା ଆଉ ଜ୍ଞାନୀ ଗୁଣୀମାନେ
ଦେଇ ନିଜ ମନ ଜ୍ଞାନ,
ରଚିଦେଇ ଗଲେ ଦେଶ ପାଇଁ
ଏକ ନୂତନ ସମ୍ବିଧାନ ।।
ଆଇନ-ପ୍ରଣେତା ଶାସନ କରତା
ନ୍ୟାୟ-ପାଳିକାର ନୀତି,
ଲେଖିଦେଇ ଗଲେ ନିରପେକ୍ଷ ଭାବେ
ନରଖି କା ପ୍ରତି ପ୍ରୀତି ।।
ଦୁଃଖ ଲାଗେ ଆଜି ''ଗଣନୀତି''
ବଦଳରେ ଚାଲେ ରାଜନୀତି ।
ଗଣନେତା ଆଜି ନାହାନ୍ତି ଦେଶରେ
ରାଜନେତାଙ୍କ ରାଜୁତି ।।
ରାଜାମାନେ ସିନା ଗଲେଣି କେବେଠୁଁ
ରହିଅଛି ରାଜକୋଷ ।
''ରାଜକୋଷ'' ନାମ ''ଅର୍ଥକୋଷ'' କଲେ
ହୁଅନ୍ତା କି କିଛି ଦୋଷ ?
ରାଜା ନାହାନ୍ତି ଏ ଦେଶରେ ତଥାପି
ରହିଅଛି ରାଜପଥ ।
ରାଜନେତାଙ୍କର ଯାତାୟାତ ପାଇଁ
ଏହା କଣ ସମର୍ପିତ ?
ରାଜା ଗଲେ 'ରାଜ' ଶବ୍ଦର ଗରିମା
ବଢୁଅଛି ଦିନୁ ଦିନ
ବେଳ ଥାଉଁ ଥାଉଁ ଏଥିପ୍ରତି ସର୍ବେ
ରହିଥାନ୍ତୁ ସାବଧାନ ।।

❋❋❋

॥ ୩୫ ॥

# ଚିଠି ବସନ୍ତକୁ

ବସନ୍ତର ଅପେକ୍ଷାରେ
ଥିଲି ମୁଁ ଅନାଇଁ ।
ହେଲେ – ଆସିଲା ନିଦାଘ
ଚାରିଆଡେ ଖରା ଟାଇଁ ଟାଇଁ ।।

ନିଦାଘର ଉଷ୍ମତାକୁ
ସହିବାରେ ନାହିଁ ଅନୁଭୂତି ।
ହେଉ ପଛେ ଡେରି
ଆସି ଥରେ ଦେଖିଯାଅ
ତୁମ ପାଇଁ ଅଭିସାରେ
ବସିଛି ମୁଁ ଲଗାଇ ଗଜରା
ଆଉ ଜାଳି ସଞ୍ଜବତୀ ।।

ତୁମେ ନ ଆସିଲେ
ସବୁ ରଙ୍ଗ ରସ ପଡିଯିବ ଫିକା ।
ବ୍ରଜଦାଣ୍ଡେ ଉଡିବନି ରଙ୍ଗର ଫୁଆରା,
ନାଚିବେନି ରାଧା ଆଉ
ସକଳ ଗୋପୀକା ।।

ମୁଁ ନୁହେଁ ଏକା ଆଜି
ଭୁଲ ପାଇଁ ସର୍ବେ ଅନୁତପ୍ତ ।
ସମସ୍ତେ ତତ୍ପର ଆଜି
ସବୁଜ ବିପ୍ଳବ ଆଣି
କରିବାକୁ ପ୍ରକୃତିକୁ ସବୁଜ ମଣ୍ଡିତ ।।

❋❋❋

॥ ୩୬ ॥

# ଜୀବନ ପଥ

ଅଙ୍କା ବଙ୍କା ଏହି ଜୀବନର ପଥେ
ରହିଛି ଅନେକ ଶଙ୍କା ।
କେତେବେଳେ ଏହା ବ୍ୟସ୍ତବହୁଳ
କେତେବେଳେ ପୁଣି ଏକା ।।
ଶୈଶବରେ ପିତା ମାତାଙ୍କ ବାତ୍ସଲ୍ୟ
କିଶୋରେ କେତେ ଆକଟ,
ଯୌବନରେ ମନ ହୁଅଇ ଚଞ୍ଚଳ
ରହିଛି କେତେ ସଙ୍କଟ ।।
ଯୌବନରୁ ଜରା ପହଞ୍ଚିବା ପାଇଁ
ସବୁଠୁ ଅଧିକ ବାଟ ।
ଯଶ ଗୌରବ ଅରଜିବା ପାଇଁ
ଏହି ସମୟ ଉତ୍କୃଷ୍ଟ ।।
ଏ ସମୟ ବଡ ମୂଲ୍ୟବାନ
ଯିଏ ନକରଇ ଉପଯୋଗ,
ପଛେ ଭାବିହେଲେ କିଛି ଲାଭ ନାହିଁ
କେବଳ ମନେ ବିରାଗ ।।
ଆଜି କାମ କାଲି କରିବା ପାଇଁକି
ଯଦି ଭାବୁଥିବ ମନେ,
କାଲି କେହି କେବେ ଦେଖିନି ଜୀବନେ
ରଖିଥାଅ ଏହା ଧ୍ୟାନେ ।।

ଜାଣିହେବ ନାହିଁ ଆସି କେତେବେଳେ
ଛୁଇଁଦେଇ ଯିବ ଜରା ।
ଜରାବସ୍ଥା ଭାରି ଏକା ଏକା ଲାଗେ
ଖାଲି ଟାଇଁ ଟାଇଁ ଖରା ।।
ଧୀରେ ଧୀରେ ଆସି ଗ୍ରାସିବ ବାର୍ଦ୍ଧକ୍ୟ
ଅସହ୍ୟ ହେବ ଜୀବନ ।
ଅଜାଣତେ ଆସି ପାଶେ ପହଞ୍ଚିବ
ସେପୁର ଯିବା ସମନ ।।
ଏହିତ ଜୀବନ ପଥ ଆରେ ଭାଇ
ଦିଶେ କେତେ ଅଙ୍କା ବଙ୍କା ।
ଆସିଥିଲୁ ଦିନେ ଏକୁଟିଆ ତୁହି
ଗଲାବେଳେ ଯିବୁ ଏକା ।।



॥ ୩୭ ॥

# ଯାତ୍ରୀ ତୁ ଏ ମିଛ ଦୁନିଆର

ଯାତ୍ରୀ ତୁ ଏ ମିଛ ଦୁନିଆର ରାଜରାସ୍ତା ପରେ,
ଶେଷ ଲକ୍ଷସ୍ଥଳ ତୋର ଗାଁର ମଶାଣି ।
ତୋ ଆଗରୁ କେତେ ଆସି
ଲେଉଟି ଗଲେଣି
ଦୁଇ ଗଜ ଭୂମି ଥିଲା ସଭିଙ୍କ ମାଗୁଣି ।।

କିଏ ରାଜ ବଙ୍ଗଳାରେ ଶୋଉଥିଲା
ମଖମଲୀ ଶେଯ ତକିଆରେ ।
କାହାର ନ ଥିଲା ଚାଳ ମୁଣ୍ଡ ଗୁଞ୍ଜିବାକୁ
ରହୁଥିଲା ଫୁଙ୍ଗୁଳା ଦେହରେ ।।

କିଏ ଖାଉଥିଲା ପୁରି ରାବିଡି ପୁଲାଉ
ଖିରୀ ଆଉ ମାଂସ ବିରିଆନୀ ।
କାହାର ଭୋକିଲା ପେଟ
ମିଳେନାହିଁ ମୁଠେ ଭାତ
ପିଇବାକୁ ଟୋପାଏ ତୋରାଣୀ ।।

କିଏ ପାଏ ନାହିଁ କନା
ଲୁଚାଇବାକୁ ତା ଲାଜ,
କିଏ ପିନ୍ଧେ ପାଟ ମଠା ଶାଢୀ ।
କିଏ ପାଦେ ଚାଲି ଚାଲି ଥକିପଡେ
କିଏ ବୁଲେ ଚଢି ଘୋଡ଼ାଗାଡି ।।

ଧନ ଜନ ଗର୍ବ ସବୁ ଅଢେଇ ଦିନିଆ,
ଏଇ ମିଛ ମାୟା ସଂସାରରେ ।
ଫେରିଯିବେ ସର୍ବେ
ଖାଲିହାତେ ଗୋଟିଏ ରାସ୍ତାରେ
ଛାଡି ସବୁ ଏହି ଦୁନିଆରେ ।।

***

॥ ୩୮ ॥

# ସମୟ

ସମୟର ଚକ୍ର
ଘୁରୁଛି ସେ ଅବିରତ
ଆଗକୁ ଆଗକୁ ।
ଫେରି ଚାହେଁ ନାହିଁ କେବେ
ମୂହୁର୍ତ୍ତେ ପଛକୁ ।।

ସମୟ ଚକ୍ରରେ ଆସେ
ଋତୁ ଭିନ୍ନ ଭିନ୍ନ ।
ଧରା ଅଙ୍ଗେ ଭରିଦିଏ
ରଙ୍ଗ ଭିନ୍ନ ଭିନ୍ନ ।।

ସମୟ ଡୋରିରେ ବନ୍ଧା
ଜନମ ମରଣ ।
ତା ଆଖିରେ ଧନୀ ମାନୀ
ଅବା ଜ୍ଞାନୀ ସମସ୍ତେ ସମାନ ॥

ସମୟ ଚକ୍ରରେ
ରାଜା ହୁଅଇ ଫକୀର ।
ସୁଖ ପରେ ଦୁଃଖ ଆଉ
ଦୁଃଖ ପରେ ସୁଖ
ଚାଲିଥାଏ ଏହି ରୀତି
ସଦା ନିରନ୍ତର ।।

ବିତିଯିବା ସମୟଟା
ଆସେନାହିଁ ଫେରି ।
ଯେ ନ କରେ ତାର ଉପଯୋଗ
ପଶ୍ଚାତାପେ ହୁଏ ସଦା ଘାରି ।।

ତା ଆରମ୍ଭ ଶେଷ କେବେ
କାହାକୁ ତ ନାହିଁ ଜଣା ।
ହେଲେ ସବୁ ଜନ୍ମ ଓ ମୃତ୍ୟୁର
ହିସାବ ତା ପାଖରେ ଗଣା ।।

ଯଦି କେବେ ସମୟ ଘଡିରେ
କଣ୍ଟାମାନେ ହୋଇଯିବେ ଥୟ,
ସବୁକିଛି ହୋଇଯିବ ଓଲଟ ପାଲଟ
ଆସିଯିବ ସୃଷ୍ଟିର ପ୍ରଳୟ ।।

ସେଥିପାଇଁ ସମୟ ହିଁ
ବଡ ବଳବାନ ।
ତା ଆଖିରେ ନୁହେଁ କେହି
ବଡ ସାନ ସମସ୍ତେ ସମାନ ।।

***

॥ ୩୯ ॥

# ହୋଲି

ଆଜି ଏଇ ମଧୁମାସେ
ରଙ୍ଗର ଶ୍ରାବଣ ହୋଇ
ବର୍ଷିଯିବି ମୋ ଦେଶ
ଭାରତ ବର୍ଷେ ।

ସେ ରଙ୍ଗେ ଭିଜିବି ମୁହିଁ
ଭିଜିବେ ମୋ ଦେଶବାସୀ
ପାଳିବେ ଏ ରଙ୍ଗ ପର୍ବ
ଆନନ୍ଦେ ଉଲ୍ଲାସେ ।।

ସବୁ ଦାଣ୍ଡ ହେବ ବ୍ରଜ ଦାଣ୍ଡ
ସବୁ ନାରୀ ହେବେ ଗୋପାଙ୍ଗନା
ନାଚିବେ ରଙ୍ଗାଇ ଅଙ୍ଗ
ଥିବେ ସଙ୍ଗେ ରାଧିକା ଓ କାହ୍ନା ।।

ଖେଳିବା ଆନନ୍ଦେ ରଙ୍ଗ
ଭୁଲି ସବୁ ରାଗ ଦ୍ୱେଷ
ଆଉ ଅବିଶ୍ୱାସ ।
ଥାଉ ଯେତେ ଅନେକତା
ଆମେ ସବୁ ଏକ ହୋଇ
ଆଙ୍କିଦେବା ସପ୍ତ ରଙ୍ଗେ ଇନ୍ଦ୍ରଧନୁ
ଝଲସାଇ ଏ ଦେଶ ଆକାଶ ।।

***

॥ ୪୦ ॥

# ରଙ୍ଗ ପସରା

କଳା ଧଳା ନାଲି
ରଙ୍ଗ ଭଳି ଭଳି
ବରଷକେ ଥରେ ଆସିଛିରେ ହୋଲି
ରଙ୍ଗର ପସରା ମେଲି ॥ ୦ ॥

ଅଜା ସଙ୍ଗେ ନାତି
ପତ୍ନୀ ସଙ୍ଗେ ପତି
ଖେଳୁଛନ୍ତି ମିଶି ଯୁବକ ଯୁବତୀ
ସବୁ ରାଗ ରଷା ଭୁଲି ।
ରଙ୍ଗର ପସରା ମେଲି .... ॥ ୧ ॥

କିଶୋର କିଶୋରୀ
ହାତେ ପିଚ୍‌କାରୀ
ରଙ୍ଗ ମରା ମରି ହୁଅନ୍ତି ଆନନ୍ଦେ
ଗାଁ ଦାଣ୍ଡେ ବୁଲି ବୁଲି ।
ରଙ୍ଗର ପସରା ମେଲି .... ॥ ୨ ॥

ଉଡେରେ ଗୁଲାଲ
ରଙ୍ଗ ଲାଲ ଲାଲ
ଗୋପାଳଙ୍କ ବାଳ ଗାଆନ୍ତି ଓଗାଳ
ନାଚୁଛନ୍ତି ଝୁଲି ଝୁଲି ।
ରଙ୍ଗର ପସରା ମେଲି ... ॥ ୩ ॥

ହିନ୍ଦୁ ମୁସଲମାନ
ଶିଖ ଖ୍ରୀଷ୍ଟିଆନ
ଜାତି ଧର୍ମ ଭୁଲି ଖେଳୁଛନ୍ତି ହୋଲି
ହେଉଛନ୍ତି କୋଳାକୋଳି
ରଙ୍ଗର ପସରା ମେଲି ... ॥ ୪ ॥

କେତେ ଅନେକତା
ଭିତରେ ଏକତା
ବିଶେଷତା ଏହା ଆମ ସଂସ୍କୃତିର
ବିଶ୍ୱ ଦେଖୁ ଆଖି ଖୋଲି ।
ରଙ୍ଗର ପସରା ମେଲି ... ॥ ୫ ॥

ହେ ରାଧା ମାଧବ
ଏ ରଙ୍ଗ ପରବ
ଆଣୁ ଶାନ୍ତି ମୈତ୍ରୀ ପ୍ରେମ ସଦ୍‌ଭାବ
ହିଂସା ଦ୍ୱେଷ ଘୃଣା ଭୁଲି ।
ରଙ୍ଗର ପସରା ମେଲି ... ॥ ୬ ॥

***

॥ ୪୧ ॥

# ମା

ତୁ କେବେ ମାଗିନୁ ତୋର
ମମତାର ମୂଲ ।
ମୁଁ କାନ୍ଦିଲେ ତୋ ଆଖିରୁ ଝରେ ଲୁହ
ଧାଇଁ ଆସି କୋଳେ ନେଉ ଟେକି
କରୁ କେତେ ଗେଲ ॥

ମୁଁ ହସିଲେ ତୋ ପେଟ ପୁରିଯାଏ,
ତୋ ଓଠରୁ ଝରିପଡେ ହସ ।
ମୋ ଶୁଭ ମନାସଉ ସଦା
କରି କେତେ ବ୍ରତ ଉପବାସ ॥

ମୁଁ କେବେ ପଡିଲେ ରୋଗରେ
ତତେ ସବୁ ଦିଶଇ ଅନ୍ଧାର ।
ମୋ ପାଖରେ ବସୁ ଉଜାଗରେ
ଦିନ ରାତି କରି ଏକାକାର ॥

ମୁଁ ଯେତେ ଅସୁନ୍ଦର ହେଲେ
ତୋ ପାଇଁ ମୁଁ ରାଜାର କୁମାର ।
ଡେରିହେଲେ ମୋ ଫେରିବା ବେଳ
ଯାଉଥାଉ ଦୁଆରୁ ଦାଣ୍ଡକୁ
ଆଉ ଦାଣ୍ଡରୁ ଦୁଆର ॥

ଯେତେ ବଡ ହେଲେ ବି ମୁଁ
ସବୁବେଳେ ଛୋଟ ତୋ ଆଖିରେ
ସୁଖି ଯାଇଥିଲେ ମୁହଁ ମୋର
ପୋଛିଦେଉ ପଣତ କାନିରେ ॥

ନିଜେ ନଖାଇ ତୁ ମୋ ପାଇଁ
ରଖି ଥାଉ ।
ତୋ ଛଡା ଏ ଦୁନିଆରେ
ଏପରି କିଏସେ କରିବ ବା ଆଉ ।।

ଯେତେ ଅଭାବରେ ଥାଇ ବି ତୁ
ସବୁ ଇଛା ମୋର କରିଛୁ ପୂରଣ ।
କେବେହେଲେ ଦେଇନାହୁଁ
ଜାଣିବାକୁ ଅଭାବ କଅଣ ।।

ତୋ କୋଳରେ ଯଦି କେବେ
ମୁଣ୍ଡ ରଖି ଯାଏ ମୁହିଁ ଶୋଇ,
ମୋ ମନର ଯେତେ କଷ୍ଟ
ଯେତେ ବା ବେଦନା
ଭୁଲିଯାଏ ମୁହିଁ ।।

ସବୁ କଷ୍ଟ ନୀରବରେ
ସହିଯାଉ ବୋଲି
ଏ ସଂସାରେ ତୁ ସର୍ବସଂହା ।
କାହାରି ଯନ୍ତ୍ରଣା ଦେଖିଲେ
ତୋ ତୁଣ୍ଡରୁ ବାହାରଇ 'ଆହା' ।।

ଏ ସଂସାରେ କେହି କେବେ
ହେବେନାହିଁ ତୋର ସମତୁଲ ।
ତୋ ଠାରେ ସମସ୍ତେ ଋଣୀ
ଦେଇକେ ପାରିବ
ତୋ ମମତାର ମୂଲ ?

***

॥ ୪୨ ॥

# ସମୟ ସ୍ରୋତରେ ମୋ ଗାଁ

ସହରର ଯେତେ ସୁବିଧା ସୁଯୋଗ
ଗାଁକୁ ଗଲାଣି ମାଡି ।
ଗାଁ ଲୋକେ ମଧ ସହରରେ ଆସି
କିଣିଲେଣି ଜମିବାଡି ।।
ଗାଁ ରାସ୍ତାରେ ଦେଖିବାକୁ ଆଉ
ମିଳୁନି କାଦୁଅ ପାଣି ।
ସବୁ ଦିନେ ଚାଲେ ବସ୍ ମୋଟର
ପିଚୁ ରାସ୍ତା ହୋଇଲାଣି ।।
ଗାଁ ଲୋକେ ଯିଏ କରନ୍ତି ଚାକିରି
ନିକଟସ୍ଥ ସହରରେ,
ସକାଳୁ ସକାଳୁ ବସରେ ଯାଇ
ଫେରି ଆସନ୍ତି ସଂଧ୍ୟାରେ ।।
ସବୁ ଗାଁ ରାସ୍ତା ଝଲସୁଛି ଆଜି
ବିଜୁଳି ଆଲୁଅ ପାଇଁ ।
ଲଣ୍ଠନ ଆଉ ଡିବିରି ଆଲୁଅ
ଦେଖିବାକୁ ମିଳୁନାହିଁ ।
ନାହିଁ ସେ ଦିନର ମାଟି କାନ୍ଥ
ଆଉ ଚାଳ ଛପରର ଘର ।
ଚାରିଆଡେ ଦିଶେ ପକ୍କାଘର ଖାଲି
ନାହିଁ ବନ୍ୟା ବାତ୍ୟା ଡର ।।

ବର୍ଷା ଦିନରେ ଗାଁ ଦାଣ୍ଡେ ଆଉ
ଫୁଟୁନି କାଦୁଅ ପଙ୍କ ।
ସିମେଣ୍ଟ ଢଳାଇ ରାସ୍ତା ହୋଇଛି
ଦିଶୁଅଛି ଝକ ଝକ ।।
ଗୋରୁଗାଈ ଘରେ ପାଳୁଥିଲେ ଆଗେ
ଚାଷବାସ କାମ ପାଇଁ ।
ଟ୍ରାକ୍ଟରରେ ଆଜି ଚାଷ ହେଉଅଛି
ଗୋରୁ ରଖନ୍ତିନି କେହି ।।
ଗୋଧୂଳି ବେଳର ଗାଈଙ୍କ ବାହୁଡା
ଦୃଶ୍ୟ ହେଲାଣି ସପନ ।
ଗ୍ରାମ୍ୟ ଜୀବନରେ ଗୋମାତାର ଦାନ
ବୁଝିବାରେ କାର ମନ ?
ଯୌଥ ପରିବାରରେ ରହିବାକୁ ଲୋକେ
କରୁନାହାନ୍ତି ପସନ୍ଦ ।
ନିଜ ପିଲାଛୁଆ ନେଇକି ରହିଲେ
ମିଳୁଛି ତାଙ୍କୁ ଆନନ୍ଦ ।।
ପ୍ରିୟ ପରିଜନ ବନ୍ଧୁବାନ୍ଧବଙ୍କ
ସ୍ନେହ ମମତାର ଡୋରି,
ଧୀରେ ଧୀରେ ଆଜି ଦୁର୍ବଳ ହେଉଛି
ଆଗକୁ ଯିବେ ପାସୋରି ।।
ଆଜିକାଲି ଆଉ ନଈ ପୋଖରୀରେ
ନାହିଁ ତ ଗାଧୁଆ ତୁଠ ।
ଗାଧୁଆ ତୁଠରେ ଝିଅ ବୋହୂଙ୍କର
ହେଉନାହିଁ ଭେଟଘାଟ ।।

ଘରେ ଘରେ ଆଜି କରିଲେଣି ସବୁ
ଶୌଚାଳୟର ବ୍ୟବସ୍ଥା ।
ଶୌଚ ପାଇଁକି ସ୍ତ୍ରୀ ଲୋକମାନେ
ହେଉନାହାଁନ୍ତି ହୀନସ୍ତା ।।
ଘର ଦୁଆରକୁ ଗୋବର ପାଣିରେ
ଲିପିବାକୁ ପଡୁନାହିଁ ।
ସିମେଣ୍ଟର କାନ୍ଥ ସିମେଣ୍ଟ ଅଗଣା
ଲିପିବା କେଉଁଥିପାଇଁ ?
ହାଣ୍ଡିଶାଳ ଘର ବଦଳିଗଲାଣି
ନାହିଁ ଚୁଲ୍ଲୀ ଅଧାକାନ୍ଥି ।
ହାଣ୍ଡି ମାଠିଆ ତ ସପନ ହେଲାଣି
ନାହିଁ ଧୂଆଁ ନିଆଁ ତାତି ।।
ରୋଷାଇ ଗ୍ୟାସ୍ ଷ୍ଟୋଭ୍ ହିଟର
କେତେ ଯେ ଉପକରଣ,
ରୋଷାଇ ପାଇଁକି ଉପଲବ୍ଧ ଆଜି
ଗାଁ ଗହଳିରେ ଜାଣ ।।
ଗାଁ ବୋହୂ ଆଜି କଳସୀ କାଖେଇ
ଯାଉନାହିଁ ପାଣି ଆଣି ।
ଘର ଅଗଣାରେ ନଳ କୂଅରୁ ସେ
ନେଉଅଛି କାଢ଼ି ପାଣି ।।
ଧୋବା ଭଣ୍ଡାରିଏ ଛାଡ଼ି ସାରିଲେଣି
ନିଜର କୁଳ ବେଉସା ।
ଲଣ୍ଡ୍ରୀ ସେଲୁନ୍ ସହରରେ କରି
କମାନ୍ତି ଦୁଇ ପଇସା ।।

ଗାଁ ଗହଳିରେ ପୁନିଅଁ ପରବ
ପଡିଆସିଲାଣି ଫିକା ।
ସହରି ସଭ୍ୟତା ଦେଉଅଛି ଆଜି
ନୂଆ ଚଳଣିର ଶିକ୍ଷା ।।
ସମୟ ସ୍ରୋତରେ ବଦଳିଛି ଗାଁ
ବଦଳିଛ ଆଜି ସହର ।
ଆମକୁ ବି ଆଜି ବଦଳାଇବାକୁ
ପଡିବ ଆମର ନଜର ।।

***

॥ ୪୩ ॥

# ଆହିଆ ନଈ

ବିବର୍ଣ୍ଣା ତୋ ରୂପ ଆଜି
ସମୟର କରାଳ ସ୍ରୋତରେ ।
ତଥାପି ସାଇତି ରଖିଛି
ତୋ ସହିତ ଯୋଡା ଯେତେ ସ୍ମୃତି
ମୋ ମନ ଭିତରେ ।।

ତୋ କୂଳରେ ମୋ ଛୋଟ ଗାଁ ଟି
ଥିଲା କେତେ ସବୁଜ ସୁନ୍ଦର ।
ନାହିଁ ମାଟି ଚାଳଘର ଆଉ
ଚାରିଆଡେ ଦିଶେ କୋଠାଘର,
କେତେ ରକ୍ଷ କେତେ ଯେ ଧୂକ୍ଷର ।।

ପ୍ରତି ପ୍ରଭାତରେ ତୋ କୋଳରେ
ଫୁଟୁଥିଲା ନାଲି ନୀଳ କଇଁ
ଆଉ ଶତ ଶ୍ୱେତ ପଦ୍ମ ।
ଧଳା କଇଁ ଉଠୁଥିଲା ଚେଇଁ
ରାତ୍ରି ଆକାଶରେ ଦେଖି ପ୍ରିୟ ଚାନ୍ଦ ।।

ପାଣିକୁଆ ହଂସରାଳି ପକ୍ଷୀମାନେ
ହୋଇ ଏକମେଳି,
ତୋ ଜଳରେ ଆନନ୍ଦରେ
କରୁଥିଲେ କେଳି ।

ଆଉ ଆମେ ସବୁ ସାଙ୍ଗପିଲା
ତୋ କୋଳେ ପହଁରୁଥିଲୁ
ଦେଖାଇ ଭଙ୍ଗୀ ଭଳି ଭଳି ।।

ବିରଳ ସେ ଶହେ ଆଠ ପାଖୁଡିଆ
ଶ୍ୱେତ ପଦ୍ମ ଫୁଟୁଥିଲା
ତୋହରି ବକ୍ଷରେ ।
ମନଇଛା ଆମେ ସବୁ ତୋଳିନେଉଥିଲୁ
ସହୁଥିଲୁ ବିନା କଟାକ୍ଷରେ ।।

ତୋ କୂଳରେ ଠିଆ ସେଇ
ଶୁଖିଲା ଥୁଣ୍ଟାଗଛ ଅଗ୍ରେ
ପାଣିକୁଆ ଖରାଖାଏ ବସି ।
ଆମେ ସବୁ ପିଲାମାନେ
ଧରୁଥିଲୁ ମାଛ ପକାଇ ବନିସି ।।

ମାଛରଙ୍କା ଉଡୁଥିଲା ତୋ ଉପରେ
ମାଛ ଲାଳସାରେ ।
ନଜର ପଡିଲେ ଝାମ୍ପି ନେଉଥିଲା ମାଛ
ବିଜୁଳି ବେଗରେ ।।

ଜୀର୍ଣ୍ଣଶୀର୍ଣ୍ଣ ତୋ ଶରୀର
ଆଜି ନାହିଁ ସେ ପୂର୍ବ ସୁଷମା ।
ସମୟ ସ୍ରୋତରେ ହରାଇଛୁ
ଆଣିଦିଆ ନଈ ତୁ ତୋ ପୂର୍ବ ଗରିମା ।।



॥ ୪୪ ॥

# ଶାରଦୀୟ ସଂଧ୍ୟା

ଦୂର ଦିଗ୍ୱଳୟେ ଅସ୍ତାଚଳେ
ଲୁଚିଗଲେ ଦିନ ଅଭିନୟସାରି ଦିନମଣି ।
କଳାମେଘୀ ପାଟ ପିନ୍ଧି
ଧରଣୀ ବୁକୁରେ ଧୀରେ ପାଦଥାପି
ଓହ୍ଲାଇ ଆସିଲେ ସଂଧ୍ୟାରାଣୀ ।।

ମଥାରେ ଝଲକେ ତାଙ୍କ
ସିନ୍ଦୁରବିନ୍ଦୁ ସମ ପୂର୍ଣ୍ଣମୀର ଇନ୍ଦୁ ।
ସେ ବିନ୍ଦୁର ଦୁଇ ପାର୍ଶ୍ୱେ
ତାରାଫୁଲ ଯେତେ
ଫୁଟି ଚମକନ୍ତି ସତେ ଅବା
ଟୋପି ଚନ୍ଦନର ବିନ୍ଦୁ ।।

ମନ୍ଦିରରୁ ସଂଧ୍ୟା ଆରତିର
ଘଣ୍ଟ ଘଣ୍ଟା ଧ୍ୱନି ଆସୁଥିଲା ଭାସି ।
ଗ୍ରାମ୍ୟ ବଧୂ ଚଉରା ମୂଳରେ
ସଂଧ୍ୟାଦୀପ ଜାଳି
ଶୁଭ ମନାସଇ ବସି ।।

ଶାରଦୀୟ ସାଂଧ୍ୟ ଆକାଶର ଶୋଭା
ମନେ ଭରି ଦେଉଥିଲା
କେତେ ଯେ ପୁଲକ ।
ଗାଁ ଦାଣ୍ଡେ ପିଲାମାନେ କରୁଥିଲେ
କେତେ କ୍ରୀଡା କଉତୁକ ।।

ଗାଁ ଦାଣ୍ଡ ପିଣ୍ଡାପରେ ବସି ବୁଢା ଅଜା
ଗରମ ଚା'ର ମଜା ନେଉଥିଲେ
ପକାଇ ଚାଉଳଭଜା ।।

ସାଙ୍ଗ ସାଥୀ ତାଙ୍କ ଆସି ପହଞ୍ଚନ୍ତି
ସାଇ ପଡିଶାରୁ ଧୀରେ ।
ଆଲୋଚନା ଚାଲେ ଚାଷବାସ
ଆଉ ପାଣି ପାଗ ବିଷୟରେ ।।

ଗୃହବଧୂ ଚଳେ ରୋଷେଇ ଘରକୁ
ଭୋଜନ ପ୍ରସ୍ତୁତି ପାଇଁ ।
ଚାଉଳ ପରିବା ଡାଲି ତେଲ ଆଉ
ମସଲା ମସଲି ନେଇ ।।

ସଂଧ୍ୟାରେ ପ୍ରାର୍ଥନା ସାରି ପିଲାମାନେ
ପାଠ ପଢିବାରେ ମଗ୍ନ ।
ମନରେ ବ୍ୟଗ୍ରତା ପାଠ ପଢ଼ା ସାରି
ଦେଖିବେ ଦୂରଦର୍ଶନ ।।

ଗାଁ କ୍ଲବର ଯୁବ ସାଥୀମାନେ
ହୋଇ ଏକମେଳ ମନ,
ବିଚାରନ୍ତି ଦୁର୍ଗାପୂଜା କୁମାରୋତ୍ସବ
କରିବେ ପାଳନ ।।

ବିରହିଣୀ କଇଁ ରହିଥିଲା ଚାହିଁ
ଚାନ୍ଦ ଦରଶନ ପାଇଁ ।
ଚାନ୍ଦ ଆକାଶରେ ଦେଖି ତା ମନରେ
ଆନନ୍ଦର ସୀମା ନାହିଁ ।।

ଦୂର ଚାନ୍ଦ ସେ ଯେ ବୁଝିପାରି
ତାର ପ୍ରିୟା ମନର ବେଦନା,
ମନ ତୋଷିବାକୁ ଢାଳେ ପ୍ରୀତିମଧୁ–
ଭରା ଶୀତଳ ଜୋଛନା ।।

ବଣେ ବଣମଲ୍ଲୀ ଫୁଟି ଚହଟାଏ
ସୁବାସ ତା ଚଉଦିଗେ ।
ଗଙ୍ଗଶିଉଳିର ଭୁରୁ ଭୁରୁ ବାସ୍ନା
ଜଗାଏ ପୁଲକ ଅଙ୍ଗେ ।।

ସଂଧ୍ୟାକାଳ ଧୀରେ ଅତିକ୍ରାନ୍ତ ହୁଏ
ଆସଇ ରଜନୀ କାଳ ।
ନୀଦ୍ରାଦେବୀ କୋଳେ ଶୁଅନ୍ତି ସରବେ
ମନାସି ଶୁଭ ସକାଳ ।।

❋❋❋



## ବାଉରି ବନ୍ଧୁ ଲେଙ୍କା



# କବି ପରିଚୟ

ଦୀର୍ଘ ଦିନ ଧରି ସାହିତ୍ୟ ସାଧନାରେ ରତ ଥିବା ଶ୍ରୀ ବାଉରି ବନ୍ଧୁ ଲେଙ୍କାଙ୍କର ଏହା ପ୍ରଥମ ପ୍ରକାଶିତ ପୁସ୍ତକ ।

ବୃତ୍ତିଗତ ଦୃଷ୍ଟିରୁ ଟଙ୍କା ପଇସାର କାରବାରରେ, ଜଣେ ଉଚ୍ଚ ପଦସ୍ଥ ବ୍ୟାଙ୍କ ଅଧିକାରୀ ଭାବରେ ସମ୍ପୃକ୍ତ ଥାଇ ମଧ୍ୟ ଲେଙ୍କା ବାବୁ ମାନବୀୟ ସମ୍ବେଦନଶୀଳତା ଓ ଭାବପ୍ରବଣତାକୁ ମଧ୍ୟ ନିଜ ଭିତରେ ବଞ୍ଚାଇ ରଖିପାରିଛନ୍ତି । ଏହା ହିଁ ତାଙ୍କର ଏଇ ଜୀବନର ସଫଳତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଜୀବନର ସାଧାରଣ ଓ ଅସାଧାରଣ ସରଳ ଓ ତିକ୍ତ ସମସ୍ତ ଉପାଦାନକୁ ନେଇ ରଚିତ ତାଙ୍କର ଏଇ କବିତାଗୁଡ଼ିକ ପାଠକମାନେ ପାଠ କରି ଆନନ୍ଦ ଲାଭ କରିବେ ଏଇ ବିଶ୍ୱାସ ରହିଛି ।

ଲେଙ୍କାବାବୁଙ୍କର ଲେଖନୀରେ ପୁଷ୍ପବୃଷ୍ଟି ହେଉ ଓ ଏହି ପରି ଆହୁରି ଅନେକ ରଚନା ତାଙ୍କର ଝର କଲମରୁ ଝରୁଥାଉ ଏହା ହିଁ ଆମର କାମନା ଓ ପ୍ରାର୍ଥନା ।

**ଆସ୍ଥା ମିଡ଼ିଆ**
ଭୁବନେଶ୍ୱର

SIVA DTP CENTER, CUTTACK, PH.0671 2361328